# ଆରବ ସାଗରରୁ ଚିଲିକା

ଡକ୍ଟର ହରେକୃଷ୍ଣ ମହତାବ



ଡକ୍ଟର ହରେକୃଷ୍ଣ ମହତାବ ଫାଉଣ୍ଡେସନ୍
କଟକ-୭୫୩୦୦୨

# ଆରବ ସାଗରରୁ ଚିଲିକା

ଲେଖକ :

**ଡକ୍‌ଟର ହରେକୃଷ୍ଣ ମହତାବ**

ପ୍ରକାଶକ :

ଡକ୍ଟର ହରେକୃଷ୍ଣ ମହତାବ ଫାଉଣ୍ଡେସନ୍

କଟକ-୭୫୩୦୦୨

ମୂଲ୍ୟ : ଟ ୧୫-୦୦

ପ୍ରଥମ ପ୍ରକାଶ :

ନଭେମ୍ବର ୧୯୮୭



**Arab Sagararu Chilika**

Author

**Dr. Harekrushna Mahtab**

Publisher

Dr. Harekrushna Mahtab Foundation

Cuttack-753002 (Orissa), INDIA.

Price : **Rs. 15-00**

First Edition :

November 1987

# ମୁଖବନ୍ଧ

ଆରବ ସାଗରରୁ ଚଳିକା ଏକ ସାଙ୍କେତିକ ଚିହ୍ନ ! ବମ୍ବେ ରାଜ୍ୟପାଳ ପଦ ଛାଡ଼ି ଓଡ଼ିଶାର ମୁଖ୍ୟମନ୍ତ୍ରୀତ୍ୱ ପୁଣି ଗ୍ରହଣ କରିବାରେ ଏକ ମାନସିକ ଦ୍ୱନ୍ଦ୍ୱ ମଧ୍ୟରେ ମହତାବ କେତେମାସ କଟାଇଥିଲେ ୧୯୫୬ ମସିହାରେ । ନଈ ସମୁଦ୍ରକୁ ମୁହାଁଏ । କିନ୍ତୁ ଜଳରୁ ସ୍ଥଳକୁ ଆସିବା ପାଇଁ ଓଲଟା ଉଠିବାକୁ ହୁଏ, ନୌକା ଆଶ୍ରୟରେ ମୁହାଣରୁ ଉପରକୁ । ରାଜନୀତିର ଅସ୍ଥିର ତାରଙ୍ଗରେ ସିକ୍ତ ନୁହେଁ, ଜଳଦ୍ଧର୍ମ ହରାଇଗଲେ ଯେତେବେଳେ, ମହତାବ ଭାବିଲେ ଏକ ସ୍ଥିର କାଦା ଭୂଇଁକୁ ଧରିବେ । ରାଜନୀତିର ଉତ୍ତେଜନା, ସାହିତ୍ୟ ଚର୍ଚ୍ଚାର ଆମୋଦ, ଇତିହାସ ଗବେଷଣାର ନିବିଡ଼ତା, ସାମ୍ବାଦିକତାରେ ପ୍ରଶସ୍ତି, ଏ ସବୁର ବୋଝ କାନ୍ଧରେ ପକାଇ ବୁଲିଥିଲେ ସେ ପ୍ରାୟ ସମସ୍ତ ଜୀବନ ।

୧୯୫୬ ଶେଷ ଭାଗରୁ ୧୯୬୦ ପର୍ଯ୍ୟନ୍ତ ତାଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟର ଘଟଣାବଳୀ ଏହି ପୁସ୍ତକର ବିଷୟବସ୍ତୁ । ବହି ଆକାରରେ କ୍ଷୁଦ୍ର, କିନ୍ତୁ ବହନ କରିଛି ଅତି ଗୁରୁତ୍ୱପୂର୍ଣ୍ଣ ଗୌରବାବହ ଅନେକ କାହାଣୀ । ତା' ମଧ୍ୟରେ ଦୁଇଟି ବିବାଦମାନ ରାଜନୈତିକ ପରୀକ୍ଷା । କଂଗ୍ରେସ ବିଧାନସଭାରେ ସଂଖ୍ୟାଗରିଷ୍ଠ ନ ଥାଇ ଶାସନ ଦାୟିତ୍ୱ ତୁଲାଇବା ବୋଧହୁଏ ପ୍ରଥମ ଘଟିଥିଲା ମହତାବଙ୍କ ନେତୃତ୍ୱରେ । ସେହିପରି ଅନ୍ୟ ଏକ ନୀତିମୂଳକ ଭାବେ ପରୀକ୍ଷିତ ହେଲା ଏକାଧିକ ରାଜନୈତିକ ଦଳଙ୍କର ସ୍ୱତନ୍ତ୍ରତା ରକ୍ଷା କରି ମିଳିତ ମନ୍ତ୍ରୀମଣ୍ଡଳ କଂଗ୍ରେସ ନେତୃତ୍ୱରେ । ମହତାବଙ୍କର ଦକ୍ଷତା ଏ ଦୁଇ କ୍ଷେତ୍ରରେ ସମସ୍ତଙ୍କ ଦୃଷ୍ଟିକୁ ଆସିଥିଲା ରାଷ୍ଟ୍ରୀୟ ସ୍ତରରେ । ଅନ୍ୟ ଏକ ଦିଗରୁ ଉଲ୍ଲେଖନୀୟ ହୋଇ ରହିବ ସବୁଦିନ ପାଇଁ ଯେ ଏହି ଦୁଇ ପରୀକ୍ଷାମୂଳକ ଅନିଶ୍ଚିତ ରାଜନୈତିକ ଅବସ୍ଥା କାଳରେ ଓଡ଼ିଶାର ଅନେକ-ଗୁଡ଼ିଏ ଉନ୍ନତିଗାମୀ ଅନୁଷ୍ଠାନ ସରକାରୀ ଚେଷ୍ଟାରେ ମହତାବଙ୍କ ପ୍ରତ୍ୟକ୍ଷ ଇଚ୍ଛାରୁ ହୋଇପାରିଥିଲା, ଯଥା, ମିଉଜିୟମ୍, ଲଳିତ କଳା ଏକାଡେମୀ, ନନ୍ଦନକାନନ, ରବୀନ୍ଦ୍ରମଣ୍ଡପ, ରାଜଭବନ, ପ୍ରାୟ ସବୁ ଜିଲ୍ଲା ସଦରମାନଙ୍କରେ ପ୍ରଥମ ଶ୍ରେଣୀ କଲେଜ ।

ଏ ପୁସ୍ତକର ଅନ୍ୟ ଏକ ଅଭିନବତା ହେଉଛି, ଏହା ମୁଖ୍ୟତଃ ଏକ ରାଜନୈତିକ ଦଲିଲ ହେଲେ ମଧ୍ୟ, ସାହିତ୍ୟିକ ଆଭିମୁଖ୍ୟରେ ଏହା ରସାଣିତ ହୋଇଛି ଶବ୍ଦ ଯୋଜନା ଓ ବର୍ଣ୍ଣନା ଶୈଳୀରେ । କୃତବିଦ୍ଙ୍କ କୃତି ଚିହ୍ନ ସବୁଠି ପରିସ୍ଫୁଟ ।

ହରିହର ମହାପାତ୍ର

ମୋର ରାଜନୈତିକ ଜୀବନରେ ବମ୍ବେରେ ଯେଉଁ ଖ୍ୟାତି ଓ ଜନପ୍ରିୟତା ଅର୍ଜନ କରିଥିଲି, ତାହା କେବେ ଭୁଲିହେବ ନାହିଁ । ଶାସନଗତ କୌଣସି ଦାୟିତ୍ୱ ନ ଥିବାରୁ ଏବଂ ସେତେବେଳେ ରାଜ୍ୟପାଳ ପଦର ଉଚ୍ଚ ସମ୍ମାନ ଥିବାରୁ ବହୁ ଜାତୀୟ ସମସ୍ୟା ସମ୍ବନ୍ଧରେ ଅଂଶଗ୍ରହଣ କରି ମୁଁ ଆନନ୍ଦ ଅନୁଭବ କରୁଥିଲି । ମୁଁ ଆଶା କରୁଥିଲି, ସେଠି ପାଞ୍ଚବର୍ଷ ରହିଯିବା ପାଇଁ । ମାତ୍ର କଂଗ୍ରେସ କର୍ତ୍ତୃପକ୍ଷଙ୍କ ଜିଦ୍ ଯୋଗୁଁ ଓଡ଼ିଶା ଆସି ଏଠାରେ ଦାୟିତ୍ୱ ନେଲି । ଏ ଜିଦ୍‌କୁ ଏଡ଼େଇ ଦେଇ ଚାଲିଥିଲି । ପ୍ରଥମେ ନିତ୍ୟାନନ୍ଦ କାନୁନ୍‌ଗୋ ମୋତେ କହିଲେ, ଓଡ଼ିଶାରେ ଶାସନ ନାହିଁ, ମୋତେ ଯିବାକୁ ହେବ । ସେ ଯାହା କହିଲେ, ଚିଠିରେ ଜବାହରଲାଲଙ୍କୁ ମତ ଦେଲି ଏବଂ ଲେଖିଦେଲି ଯେ ଏ ପ୍ରସ୍ତାବରେ ମୁଁ ସମ୍ମତ ନୁହେଁ । ତା'ପରେ ଜବାହରଲାଲଙ୍କ ଠାରୁ ବାରମ୍ବାର ପତ୍ର ପାଇଲି ଓଡ଼ିଶା ସମ୍ବନ୍ଧରେ । ଏକ ପତ୍ରରେ ଏଠା ଶାସନ ସମ୍ବନ୍ଧୀୟ ପୂରା ବିବରଣୀ ଦେଇ ଲେଖିଥିଲେ ଏବଂ ସୂଚନା ଦେଇଥିଲେ ଓଡ଼ିଶାରେ କିଛିକାଳ ରାଷ୍ଟ୍ରପତି ଶାସନ ଜାରିହେବା ଉଚିତ୍ । ତେଣେ ଏ ବିଚାର ଚାଲିଥିବାବେଳେ ମୁଖ୍ୟମନ୍ତ୍ରୀ ନବବାବୁ ଇସ୍ତଫା ଦେବେ ଦେବେ ବୋଲି ବାରମ୍ବାର କହୁଥାନ୍ତି ଏବଂ ଶୁଣାଶୁଣିରେ ମୁଁ ଓଡ଼ିଶା ଆସିବା ଜାଣି, ମୋତେ ବାରମ୍ବାର ଲେଖୁଥାନ୍ତି, ଓଡ଼ିଶା ନ ଆସିବା ପାଇଁ । କାରଣ, ଓଡ଼ିଶା କଂଗ୍ରେସ ମୋତେ ଚାହେଁ ନାହିଁ । ଅଥଚ ଅଧିକାଂଶ ଏମ୍. ଏଲ୍. ଏ ମୋତେ ଚିଠି ଓ ତାର ପଠାଉଥାନ୍ତି ଏବଂ ଅନେକେ ମଧ୍ୟ ବମ୍ବେ ଯାଇ ବ୍ୟକ୍ତିଗତ ଭାବରେ ଅନୁରୋଧ ଜଣାଉଥାନ୍ତି । ଉତ୍କଳର ପରିଜା ପ୍ରମୁଖ ବିଶିଷ୍ଟ ଅଣରାଜନୈତିକ ବ୍ୟକ୍ତି ଓଡ଼ିଶା ଆସିବା ପାଇଁ ଜିଦ୍‌କରି ମତେ ଲେଖୁଥାନ୍ତି । ଏହା

ହେଉଥିଲେ ମଧ୍ୟ ମୁଁ ବମ୍ବେରେ ସବୁ ଶ୍ରେଣୀ ସହିତ ଏପରି ମିଶି ଯାଇଥିଲି ଯେ ଓଡ଼ିଶା ଆସିବାକୁ ମନ ବଳୁ ନ ଥାଏ । ନବବାବୁଙ୍କ ପତ୍ରର ଉତ୍ତରରେ ମୁଁ ବରାବର ଲେଖୁଥାଏ, ସେ ଯାହା ମୋତେ ଲେଖୁଛନ୍ତି, ତାହା କଂଗ୍ରେସ ସଭାପତି ପ୍ରଭୃତିଙ୍କୁ ଲେଖନ୍ତୁ । କେନ୍ଦ୍ର ଇଣ୍ଟେଲିଜେନ୍ସି ବିଭାଗ ପକ୍ଷରୁ ସ୍ୱତନ୍ତ୍ର ତଦନ୍ତ କରାଯାଇ ଓଡ଼ିଶା ଶାସନ ସମ୍ବନ୍ଧରେ ଏକ ବିସ୍ତୃତ ରିପୋର୍ଟ ପ୍ରଧାନମନ୍ତ୍ରୀଙ୍କୁ ଦିଆ ହୋଇଥାଏ । ସେ ରିପୋର୍ଟ ପଢ଼ିବା ପାଇଁ ଜବାହରଲାଲ ମୋତେ ଦେଇଥିଲେ । ପଢ଼ିସାରି ଜବାହରଲାଲଙ୍କୁ କହିଲି, ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଜାରି ହେବା ଜରୁରୀ । ଶେଷରେ ମୌଲାନା ଆଜାଦ୍‌ଙ୍କୁ ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରବର୍ତ୍ତାଇ ମୋ ଉପରେ ଗୁପ ପକାଇଲେ । ମୌଲାନା ମୋତେ ଲେଖିଥିଲେ

CONFIDENTIAL

Education Minister
INDIA
New Delhi
23rd April, 1956

My dear Mahtab,

Thanks for your letter of the 20th instant.

Before I wrote to you my last letter, the Prime Minister had sent you one regarding Orissa affairs. My purpose, however, in writing to you was quite different from the Prime Minister's. Sri N. Kanungo had come to see me and said that if Shri Nabakrushna Chowdhury was unable to shoulder the responsibility for the next elections, there is no alternative but to request Sri Mahtab to do so. This made it necessary for me to think over the suggestion seriously and to consult my other colleagues about it. But naturally I could not do so without first consulting you. Hence my letter to you.

You have suggested that the only remedy for the present situation in Orissa is to suspend the constitutional Government and to resort to the President's Rule. I do not think that is a suitable remedy. Such a change may please those people who

are dissatisfied with the present Congress Government there. But when the general elections come, the common people will be inclined to think that the Congress Government had failed in their State This is not likely to help the Congress in the elections

The only proper remedy is to so change the present Congress set-up there that the common people may be persuaded to think differently and favourably of the Congress Government during the next nine or ten months. You know the present position of the party and of the Congress Government in Orissa very well. I would like, therefore, to know from you whether you are prepared to take over the party leadership there and become once more the Chief Minister. If you are, then we may seriously consider this possibility. If, however, you are not prepared to assume this responsibility, then perhaps we may be left with no alternative but to resort to the president's Rule.

Dr. Harekrushna Mahtab — Yours sincerely
Governor of Bombay
Raj Bhavan — Sd/-A. K. Azad
Bombay-6

ଏପ୍ରିଲ୍ ଠାରୁ ଅକ୍ଟୋବର ପର୍ଯ୍ୟନ୍ତ ଏପାଖ ସେପାଖ ହୋଇ ଶେଷରେ କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କ କମିଟି ମିଟିଂ ବମ୍ବେର ରାଜଭବନରେ ବସିଲା । ମୁଖ୍ୟମନ୍ତ୍ରୀ ନବବାବୁ ଓ ପ୍ରାଦେଶିକ କଂଗ୍ରେସ କମିଟି ସମ୍ପାଦକ ସୁରେନ୍ଦ୍ର ପଟ୍ଟନାୟକଙ୍କୁ ଡକା ହୋଇଥିଲା । ଶୁଣିଲି, ଏମାନେ ଜଣାଇଲେ ଯେ ଓଡ଼ିଶାରେ ସବୁ ଠିକ୍ ଅଛି । କେବଳ ମୁଁ ପୁଣି ମୁଖ୍ୟମନ୍ତ୍ରୀ ହେବାପାଇଁ ଚେଷ୍ଟା କରୁଥିବାରୁ ଯାହାକଛି ବିଭ୍ରାଟ ଘଟୁଛି । କଟକରେ "ସମାଜ" ପତ୍ରିକାରେ ସେହିପରି ଲେଖାମାନ ବାହାରୁଥାଏ । ଆଶ୍ଚର୍ଯ୍ୟର ବିଷୟ, କିପରି ସେମାନେ ବାସ୍ତବତା ଉପଲବ୍ଧି କରୁ ନ ଥିଲେ ଏବଂ କିପରି ସେମାନେ ଜାଣି ନଥିଲେ ଯେ କେନ୍ଦ୍ର ସରକାରଙ୍କ ପକ୍ଷରୁ ତଦନ୍ତ କରାଯାଇ ପରା ରିପୋର୍ଟ ଯାଇଛି ! ମୋ ସ୍ୱରକ୍ଷା ଦେଖାଇ ପରିହାସରେ

କହିଲେ, "ଯଦି ମହତାବଙ୍କୁ ଏମ୍ବାସେଡ଼ର କରି ଅନ୍ୟତ୍ର ପଠାଇ ଦିଆଯାଏ, ତେବେ ସବୁ ଠିକ୍ ହୋଇଯିବ ।" ମୁଖ୍ୟମନ୍ତ୍ରୀ ଟିକଏ ଅପ୍ରସ୍ତୁତ ହୋଇ କହିଲେ, ସେଥିରେ ଆହୁରି ବିଭ୍ରାଟ ଘଟିବ । କାରଣ, ଏମ୍. ଏଲ୍. ଏ. ମାନେ ଏଥିରେ ଅସନ୍ତୁଷ୍ଟ ହେବେ । ଯାହାହେଉ, ଏହିପରି ଯୁକ୍ତିତର୍କ ହେବା ପରେ କଂଗ୍ରେସ ସଭାପତି ଶ୍ରୀ ଧେବର ମୋତେ ମୋ ଅଫିସରେ ଜଣାଇଲେ, ସ୍ଥିରହେଲା ମୁଁ ଓଡ଼ିଶା ଯିବି । ତଥାପି ମୁଁ ସ୍ୱୀକୃତି ଦେବା ପାଇଁ ସାତଦିନ ସମୟ ନେଲି । ପୁଣି ମୌଲାନା ଆଜାଦ୍ ମୋ ସାଙ୍ଗରେ ଲାଗିଲେ । ଶେଷରେ ମୁଁ ସ୍ୱୀକୃତି ଦେଲି ଏବଂ ରାଷ୍ଟ୍ରପତିଙ୍କ ଠାକୁ ତା ୨୫।୯ ରେ ଇସ୍ତଫାପତ୍ର ପଠାଇ ଦେଇ ତା'ର ନକଲ ପ୍ରଧାନମନ୍ତ୍ରୀଙ୍କ ଠାକୁ ପଠାଇ ଦେଲି । ଦୁହିଁଙ୍କ ଠାରୁ ପ୍ରଶଂସାପତ୍ର ପାଇ ଯେତିକି ଆନନ୍ଦିତ ହେଲି, ସେତିକି ବିସ୍ମିତ ହେଲି । ରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀଙ୍କ ଉତ୍ତର ଏହିପରି

SECRET
No. 3458-0/56

Rashtrapati Bhavan
New Delhi
1st October, 1956

My dear Sri Mahtab,

I have received your letter dated 25th September 1956 in which you have asked to be relieved from your high office about the middle of this month. I have had a talk with the prime Minister as well as the Home Minister about it, and we feel that it would be possible to comply with your wishes and you may be relieved round about that date. It will be desirable to fix the exact date in consultation with the Chief Minister there, and you will no doubt get an opportunity of talking to him and fixing it up.

I need hardly assure you how much we have appreciated your service as the Governor of the big State of Bombay. The time when you have shouldered this heavy responsibility has not been free from trouble, and it gives me great pleasure to

be able to congratulate you on the way in which you have discharged your heavy responsibility. I wish you all success in the new yet old work of public service which you are going to take up in your home State of Orissa. I trust I shall soon have an opportunity of congratulating you on your assuming a responsible position in that State.

Sri Harekrushna Mahtab
Governor of Bombay

Yours sincerely
Sd/.Rajendra Prasad

CONFIDENTIAL

No. 526-PMO/56
New Delhi
October 5, 1956

My dear Mahtab,

Thank you for your letter of the 27th September with which you have sent a copy of your letter of resignation. I presume that the President has sent a reply to you accepting your resignation.

If you will permit me, I should like to express my gratitude to you for the work you have done in Bombay since you assumed charge of the Governorship. Bombay has passed through a very difficult time. I fear that the difficulties are not over yet, though I think that we have passed the crisis.

As you know, Sri Prakasa will go to Bombay as Governor. He will not be able to take charge till about the middle of November. We are, therefore, asking Chagla, the Chief Justice of Bombay, to act as Governor for about a month from the time you leave.

With all good wishes,

Yours sincerely

Shri Harekrushna Mahtab
Governor of Bombay
Bombay Governor's Camp

Sd/-Jawaharlal Nehru

ଏତେଣେ ଓଡ଼ିଶା ବିଧାନସଭା ସଦସ୍ୟମାନେ ଅକ୍ଟୋବର ୧୦ ତାରିଖରେ ସର୍ବସମ୍ମତିକ୍ରମେ ମୋତେ ନେତା ନିର୍ବାଚନ କରି ଟେଲିଗ୍ରାମ ଦ୍ୱାରା ଜଣାଇଲେ । ଗଭର୍ଣ୍ଣର ଭୀମସେନ୍ ସାଚ୍ଚର ମଧ୍ୟ ଟେଲିଗ୍ରାମ୍ କଲେ ଶୀଘ୍ର ଦାୟିତ୍ୱ ନେବାପାଇଁ । ସେ ନବବାବୁଙ୍କ ଇସ୍ତଫା ଗ୍ରହଣ କରି ମନ୍ତ୍ରୀମଣ୍ଡଳକୁ ବାତିଲ୍ କରି ଦେଇ ସାରିଥିଲେ । ଅକ୍ଟୋବର ୧୯ ତାରିଖରେ କଟକ ଆସି ଶପଥ ଗ୍ରହଣ କଲି । ପୂର୍ବ ମନ୍ତ୍ରିମଣ୍ଡଳରୁ କେତେଜଣଙ୍କୁ ବାଦ୍ ଦେଇ ନିମ୍ନଲିଖିତ ମନ୍ତ୍ରୀମାନଙ୍କୁ ନେଇ କ୍ୟାବିନେଟ୍ ଗଠନ କଲି ।

୧ । ରାଧାନାଥ ରଥ, ମନ୍ତ୍ରୀ
୨ । ସତ୍ୟପ୍ରିୟ ମହାନ୍ତି, ମନ୍ତ୍ରୀ
୩ । ରାଜବାହାଦୁର ଶ୍ରୀ କିଶୋର ଚନ୍ଦ୍ର ଦେଓ ଭଞ୍ଜ, ମନ୍ତ୍ରୀ
୪ । ବସନ୍ତ ମଞ୍ଜରୀ ଦେବୀ, ଉପମନ୍ତ୍ରୀ
୫ । ନୀଳମଣି ରାଉତରାୟ, ଉପମନ୍ତ୍ରୀ
୬ । କୃପାନିଧି ନାୟକ, ଉପମନ୍ତ୍ରୀ
୭ । ଅନୁପ ସିଂଦେଓ, ଉପମନ୍ତ୍ରୀ
୮ । ଶାନ୍ତନୁ କୁମାର ଦାସ, ଉପମନ୍ତ୍ରୀ

ମାତ୍ର ଚାରିମାସ ପରେ ସାଧାରଣ ନିର୍ବାଚନ ହେବ । ସେଥିପାଇଁ କ୍ଷେତ୍ର ପ୍ରସ୍ତୁତ କରିବାକୁ ହେବ । ଇତି ମଧ୍ୟରେ କେତୋଟି ଜରୁରୀ ପଦକ୍ଷେପ ନେବାକୁ ହେବ । ଏହା ବିଚାରି ପୂର୍ବତନ ମନ୍ତ୍ରିମଣ୍ଡଳରେ ଯେଉଁମାନେ ଥିଲେ, ସେମାନଙ୍କ ମଧ୍ୟରୁ ମାତ୍ର ଜଣଙ୍କୁ ବାଦ୍ ଦେଇ, ଅନ୍ୟମାନଙ୍କୁ ନେଲି । ପ୍ରଥମ ଜରୁରୀ କାର୍ଯ୍ୟ ହେଲା, ଶାସନରେ ସ୍ୱାଭାବିକ୍ ଅବସ୍ଥା ଆଣିବା । ବନ୍ୟାରେ ପ୍ରଭୂତ କ୍ଷତି ହୋଇଥିଲେ ମଧ୍ୟ ରିଲିଫ୍ କାର୍ଯ୍ୟ ଠିକ୍ ହେଲ ନାହିଁ । ଅତିରିକ୍ତ ଅପବ୍ୟୟ ହୋଇଥିବାରୁ ଜନ ଅସନ୍ତୋଷ, ପୁଣି ଏହାକୁ ଏଡ଼େଇବା ପାଇଁ ପ୍ରଦେଶ ପୁନର୍ଗଠନ ସଂକ୍ରାନ୍ତ ଆନ୍ଦୋଳନରେ ଅନ୍ୟ ଦଳମାନଙ୍କ ସହିତ, କେବଳ କଂଗ୍ରେସ ନୁହେଁ, ଶାସନ ମଧ୍ୟ ଜଡ଼ିତ ହେଲ ପରେ ଏ ଆନ୍ଦୋଳନକୁ ଦମନ କରିବା ପାଇଁ ସଶସ୍ତ୍ର ପୋଲିସର ବ୍ୟବହାର ଏବଂ ଶାସନଗତ ଶୃଙ୍ଖଳା ନାମରେ ବହୁ ସରକାରୀ କର୍ମଚାରୀଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ -- ଏସବୁ ହେବା ପୂର୍ବରୁ ଭୂଦାନରେ ଶାସନ

ଯୋଗ ଦେଇଥିବାରୁ ସେଥିରେ ଶୃଙ୍ଖଳା ମଧ୍ୟ ବ୍ୟାହତ ହୋଇଥିଲା । ଶାସନକୁ ସ୍ୱାଭାବିକ୍ ଅବସ୍ଥାକୁ ଆଣିବା ପାଇଁ ଯେତକ ଦମନମୂଳକ ପଦକ୍ଷେପ ନିଆ ହୋଇଥିଲା, ସେ ସବୁକୁ ପ୍ରତ୍ୟାହାର କଲି । ଏହା ହିଁ ମଧ୍ୟ ନ୍ୟାଯ୍ୟ ଥିଲା । କାରଣ ଅନ୍ୟଦଳମାନଙ୍କ ସହିତ କଂଗ୍ରେସ୍ ମଧ୍ୟ ଆନ୍ଦୋଳନ ଚଳାଇଥିଲେ । ସରେଇକଳା-ଖରସୂଆଁ ନ ମିଶିଲେ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେବେ ବୋଲି ପ୍ରାଦେଶିକ କଂଗ୍ରେସ କମିଟି ଘୋଷଣା କରିଥିଲେ । ମୁଖ୍ୟମନ୍ତ୍ରୀ ଦିଲ୍ଲୀ ଗଲେ ଅନ୍ତତଃ ସରେଇକଳା ଖରସୁଆଁ ଓଡ଼ିଶାକୁ ଫେରାଇବା ପାଇଁ, ମାତ୍ର ଆସିଲେ କେନ୍ଦ୍ର ରିଜର୍ଭ ପୋଲିସ୍ ସହିତ । ଆନ୍ଦୋଳନ ଉତ୍କଟ ହୋଇଥିଲା ପୁରୀରେ । ସେଠା ଜିଲ୍ଲାମାଜିଷ୍ଟ୍ରେଟଙ୍କ ଘର ଧ୍ୱସ୍ତ ବିଧ୍ୱସ୍ତ କରିଦିଆ ହେବାରୁ ସେ ଆସି ଅନ୍ୟତ୍ର ରହିଲେ । ରେଲ୍ ଯାତାୟାତ ବନ୍ଦ କରି ଦିଆହେଲା । ଏଣେ ସେକ୍ରେଟାରିଏଟ୍ ଅମଲାମାନେ ପ୍ରତ୍ୟକ୍ଷ ଆନ୍ଦୋଳନରେ ଯୋଗ ଦେଇ ଧର୍ମଘଟ କଲେ । ଜଣେ ହେଡ୍ ଆସିଷ୍ଟେଣ୍ଟଙ୍କ କନ୍ୟା ଗିରିବାଳା ମହାନ୍ତି ସଭାରେ ଓଜସ୍ୱିନୀ ଭାଷାରେ ଭାଷଣ ଦେଇ ଅବସ୍ଥାକୁ ଗରମ କରି ରଖିଥାନ୍ତି । କାମ ଯେତେବେଳେ ନ ହେଲା, ଦାବୀ ହେଲା ମନ୍ତ୍ରୀମଣ୍ଡଳ ଇସ୍ତଫା ଦିଅନ୍ତୁ । ଜଣେ ମନ୍ତ୍ରୀଙ୍କୁ ତାଙ୍କ କ୍ୱାର୍ଟରରୁ ବଳପୂର୍ବକ ବାହାର କରି ଦିଆହେଲା । ମୁଖ୍ୟମନ୍ତ୍ରୀଙ୍କ ଦେହରେ ହାତ ବାଜିଲା, ସେକ୍ରେଟେରିଏଟ୍ ଭିତରେ । ରାଧାନାଥ ବାବୁଙ୍କ ଘରକୁ ଘେରାଉ କରାଯାଇଥିଲା । ସେ ଉପରେ ରାଜଭବନରେ ଆଶ୍ରୟ ନେଲେ । ଅନ୍ୟ ଦିଗରେ ବିରୋଧୀ ଦଳର ନେତାମାନେ ଆଇନ ଭଙ୍ଗକରି କାରାବରଣ କରୁଥାଆନ୍ତି । ଏ ପ୍ରକାର ଉତ୍କଟ ପରିସ୍ଥିତିକୁ ଆୟତ୍ତ କରିବା ପାଇଁ ଯେତେବେଳେ ଦମନମୂଳକ ସବୁ ବ୍ୟବସ୍ଥାକୁ ପ୍ରତ୍ୟାହାର କରିବାକୁ ଆଦେଶ ଦେଲି, ହୋମ ସେକ୍ରେଟାରୀ ପ୍ରାଣନାଥ ମହାନ୍ତି ଓ ଚିଫ୍ ସେକ୍ରେଟାରୀ ଶିବରମଣ୍ ଆସି ମୋତେ ଦର୍ଶାଇଲେ ଯେ ମୁଖ୍ୟମନ୍ତ୍ରୀଙ୍କୁ ଯେଉଁମାନେ ଅପଦସ୍ଥ କରିଛନ୍ତି, ସେମାନଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ପ୍ରତ୍ୟାହାର କଲେ ଶୃଙ୍ଖଳା କିଛି ରହିବ ନାହିଁ । ଶୃଙ୍ଖଳାର ଦାୟିତ୍ୱ ମୁଁ ନେଉଛି ବୋଲି କହି ସେମାନଙ୍କ ଆପତ୍ତିକୁ ଶୁଣିଲି ନାହିଁ । ସେକ୍ରେଟାରିଏଟ୍ ଷ୍ଟାଫ୍‌ଙ୍କର ସଭା କରାହେଲା । ଗିରିବାଳା ମହାନ୍ତିଙ୍କ ଓଜସ୍ୱିନୀ ଭାଷଣ ପରେ ମୁଁ କହିଲି, ଶୃଙ୍ଖଳା ନଷ୍ଟ କରିବା ସହଜ, କିନ୍ତୁ ରକ୍ଷା କରିବା କଠିନ । ସରେଇକଳା ଖରସୁଆଁ

ନ ଆସିଲେ ମଧ୍ୟ ଓଡ଼ିଶା ତ ରହିବ । ଓଡ଼ିଶାର ଶାସନ ପ୍ରତି କିଛି ଯେପରି ଆଞ୍ଚ ନ ଆସେ, ଏଥିପାଇଁ ମୁଁ ମଧ୍ୟ ଓଜସ୍ୱିନୀ ଭାଷାରେ ଭାଷଣ ଦେଇ ଗିରିବାଳାଙ୍କୁ ପ୍ରଶଂସା କରି ତାଙ୍କୁ ମୋ ସହିତ ଯୋଗ ଦେବାପାଇଁ ଆମନ୍ତ୍ରଣ କଲି । ଏହାର ଫଳ ଅପ୍ରତ୍ୟାଶିତ ଭାବରେ ଭଲ ହେଲା । ଗିରିବାଳା ଦାୟିତ୍ୱ ନେଲେ ସେଣ୍ଟ୍ରାଲ୍‌ଷ୍ଟେଟ୍‌ର ଶୃଙ୍ଖଳା ପାଇଁ । ସେଣ୍ଟ୍ରାଲ୍‌ଷ୍ଟେଟ୍ ସୁଧୁରିଲା । ପୁରୀରେ ଏବଂ ଅନ୍ୟତ୍ର ଯେଉଁମାନଙ୍କ ନାମରେ ମୋକଦ୍ଦମା ହୋଇଥିଲା, ତାହା ପ୍ରତ୍ୟାହାର କରାଗଲା । ପୁଣି ଯେଉଁ ବିରୋଧୀଦଳ ନେତାମାନେ କଂଗ୍ରେସ ସହିତ ମଧ୍ୟ କାରବାର କରିଥିଲେ, ସେମାନଙ୍କୁ ଅପଦସ୍ଥ କରିବା ପାଇଁ ସରକାରଙ୍କ ପକ୍ଷରୁ ବହୁସଂଖ୍ୟାରେ ପ୍ରଚାରପତ୍ର ବଣ୍ଟା ହୋଇଥିଲା । ଏକସଙ୍ଗରେ କାମ କରି ଶେଷରେ ନିଜର ରକ୍ଷା ପାଇଁ ସାଙ୍ଗମାନଙ୍କୁ ଅପଦସ୍ତ କରିବା ନିତାନ୍ତ ଅନ୍ୟାୟ ଥିଲା । ଈଶ୍ୱରଙ୍କ ଇଚ୍ଛାରୁ ଅଳ୍ପକାଳ ମଧ୍ୟରେ ଶାସନ ସ୍ୱାଭାବିକ ଅବସ୍ଥାକୁ ଆସିଗଲା । ଦମନମୂଳକ ସବୁ କାର୍ଯ୍ୟାନୁଷ୍ଠାନ ପ୍ରତ୍ୟାହାର କରିନେଲା ପରେ କଂଗ୍ରେସ ସଭା କରିବା ସମ୍ଭବ ହେଲା ।

ଗୋଟିମାସ ପରେ ନିର୍ବାଚନ । ସବୁଆଡ଼େ ସଭା କରିବାପାଇଁ ମୋତେ ହିଁ ଯିବାକୁ ହେଲା । ସୌଭାଗ୍ୟବଶତଃ ମୁଁ ବମ୍ବେରେ ଥିଲି । ଓଡ଼ିଶାରେ ଥିଲେ ମୁଁ ମଧ୍ୟ କୌଣସିଆଡ଼େ ସଭା-ସମିତି କରିପାରି ନଥାନ୍ତି । ସବୁ ସଭାରେ ବହୁ ସଂଖ୍ୟାରେ ଲୋକ ଯୋଗ ଦେଉଥାଆନ୍ତି । ମୋର ଭାଷଣର ସାରମର୍ମ ଥିଲା—ଓଡ଼ିଶାକୁ ସମ୍ଭାଳିବାକୁ ହେବ । ମହାଭାରତର ଉଦାହରଣ ଦେଇ କହୁଥିଲି—ପାଣ୍ଡବମାନେ ନାନା ଭାବରେ ଦୁର୍ଯ୍ୟୋଧନ ଦ୍ୱାରା ଲାଞ୍ଛିତ ଅପମାନିତ ହୋଇଥିଲେ ମଧ୍ୟ ସେମାନେ ପ୍ରତିଶୋଧ ନେବାପାଇଁ ଅପେକ୍ଷା କଲେ । ଶେଷକୁ ସେମାନେ ବିଜୟୀ ହେଲେ । ଆଜ ଓଡ଼ିଶା କେନ୍ଦ୍ରଦ୍ୱାରା ଉପେକ୍ଷିତ ହୋଇଛି ; ଏହାର ପ୍ରତିକାର ପାଇଁ ଉପଯୁକ୍ତ ସରକାରକୁ ଅପେକ୍ଷା କରିବାକୁ ହେବ । ସବୁ ସଭାଠାରୁ ପୁରୀ ସହରର ସଭା ବଡ଼ ହୋଇଥିଲା ଏବଂ ମୁଁ ଭୀଷଣ ପ୍ରତିବାଦର ସମ୍ମୁଖୀନ ହୋଇଥିଲି । ଏପରିକି ଲୋକେ ସଭାମଣ୍ଡପ ଆଡ଼କୁ ମାଡ଼ି ଆସିବା ପାଇଁ ଉଦ୍ୟମ କଲେ । ମୁଁ ଧୈର୍ଯ୍ୟଧରି ବସିରହିଲି ଏବଂ



୧୩ ଏପ୍ରିଲ ୧୯୪୮ : ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଦ୍ୱାରା
ଭୁବନେଶ୍ୱରଠାରେ ନୂତନ ରାଜଧାନୀର ଶିଳାନ୍ୟାସ



୭ ଏପ୍ରିଲ ୧୯୫୭ : ଦ୍ୱିତୀୟବାର ମୁଖ୍ୟମନ୍ତ୍ରୀ ଭାବରେ ଶପଥ ଗ୍ରହଣ କରିବାବେଳେ ଡକ୍ଟର ମହତାବ

ପ୍ରତ୍ୟେକ ଅଭିଯୋଗର ଉତ୍ତର ଶାନ୍ତ ଭାବରେ ଦେଇ ଜନତାକୁ କହିଲି, ସେମାନେ ବସିଯାଆନ୍ତୁ, ଧୀରସ୍ଥିର ଭାବରେ କଥାବାର୍ତ୍ତା ହେବା । ମୋ' କଥା ପସନ୍ଦ ନହେଲେ ମଧ୍ୟ ମୁଁ ବିରକ୍ତ ହେବନାହିଁ, ବରଂ ସେମାନଙ୍କ ସାଙ୍ଗରେ ଏକମତ ହୋଇଯିବି । ଯାହାହେଉ, ସଭାରେ ଗଣ୍ଡଗୋଳ କରିବା ଉଦ୍ୟମ ସଫଳ ହେଲନାହିଁ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ମୁଁ କୌଣସି ସାଧାରଣ ସଭାକୁ ପୋଲିସ ସାଙ୍ଗରେ ନଏନାହିଁ । କେନ୍ଦ୍ରାପଡ଼ା ନିର୍ବାଚନରେ ପ୍ରାର୍ଥୀ ଥିଲେ କନକା ରାଜା (କଂଗ୍ରେସ) ଓ ପ୍ରତିଦ୍ୱନ୍ଦୀ ଥିଲେ ଆଳିବାଣୀ [ଗଣତନ୍ତ୍ର] । ସେଠି ସଭା ମଝିରେ ଢେଲା ପଡ଼ିବା ଆରମ୍ଭ ହେଲା । ସ୍ଥାନୀୟ ପୋଲିସ ଚାଲିଆସିଲେ । ମୁଁ ମନାକଲି । କନକା ରାଜାଙ୍କ ମୁଣ୍ଡ ଫାଟି ରକ୍ତ ବାହାରିଲା । ପୋଲିସକୁ ହସ୍ତକ୍ଷେପ କରିବାକୁ ମନାକଲି । ତା'ପରେ ଲୋକେ ଶାନ୍ତହୋଇ ଭାଷଣ ଶୁଣିଲେ । ସେହିପରି ଉତ୍ତୋଳ ନିର୍ବାଚନମଣ୍ଡଳୀରେ ହୋଇଥିଲା । ଗଡ଼ଜାତ ଇଲାକାର ବହୁ ସ୍ଥାନରେ ମଧ୍ୟ ଘଟିଥିଲା । କଂଗ୍ରେସ ପକ୍ଷରେ ପ୍ରବଳ ବାଧା ଥାଏ, କଂଗ୍ରେସ ଦଳ ଗଣତନ୍ତ୍ର ଦଳ ଶହ ମିଶି ଆନ୍ଦୋଳନ କଲେ ଏବଂ ଶେଷରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଣତନ୍ତ୍ର ପରିଷଦ ଦଳର ନେତାମାନଙ୍କୁ ବନ୍ଦୀ କଲେ । ରାଜେନ୍ଦ୍ର ନାରାୟଣ ସିଂହଦେଓ, ଗୋଦାବରୀଶ ମିଶ୍ର ପ୍ରଭୃତି କାରାରୁଦ୍ଧ ହୋଇଥିଲେ । ଯଥାଶକ୍ତି ମୁଁ ଚେଷ୍ଟାକଲି କଂଗ୍ରେସକୁ ଜିତାଇବା ପାଇଁ । ଏଥିରେ ବାଧା ଦେଇଥିଲେ କେତେକ କଂଗ୍ରେସ ଲୋକ । ପ୍ରଥମେ ପ୍ରାର୍ଥୀ ନିର୍ବାଚନକମିଟିରେ ମୋ ପ୍ରସ୍ତାବିତ ବହୁ ପ୍ରାର୍ଥୀଙ୍କୁ ମନୋନୀତ ନକରି ଅନ୍ୟମାନଙ୍କୁ ମନୋନୀତ କଲେ । ସେତେବେଳେ କଂଗ୍ରେସ ସଙ୍ଗଠନ ଭିତରେ କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ଉଦ୍ଦେଶ୍ୟ ହେଲା ଯେ ମୁଁ ବ୍ୟର୍ଥ ହୋଇଗଲେ କଂଗ୍ରେସ କର୍ତ୍ତୃପକ୍ଷ ନିଜର ଭୁଲ୍ ବୁଝିପାରିବେ । ଏ ମନୋବୃତ୍ତି ଭାରତ ଇତିହାସରେ ଅତି ପ୍ରାଚୀନ । 'ଘଇତା ପଛକେ ମରୁ, ସଉତୁଣୀ ରାଣ୍ଡି ହେଉ'। ଏ ପ୍ରବାଦ ବହୁ ସ୍ତରରେ ପ୍ରମାଣିତ ହୁଏ । ଏହି ନିର୍ବାଚନରେ ମୁଁ ଜାଣିଲି, ପୂର୍ବାପେକ୍ଷା ନିର୍ବାଚନ ଖର୍ଚ୍ଚ ପ୍ରାୟ ଚୌଗୁଣ ବଢ଼ିଯାଇଛି । ଅର୍ଥ ଯୋଗାଣ ନିର୍ବାଚନର ଏକ ବିଶିଷ୍ଟ ଅଙ୍ଗ । ମୁଁ ନିଜେ ଏହା କରିପାରିବି ନାହିଁ ବୋଲି ମନେ କରି ଅର୍ଥ ସଂଗ୍ରହର ଦାୟିତ୍ୱ ନିତ୍ୟାନନ୍ଦ କାନୁନ୍‌ଗୋଙ୍କୁ ଦିଆହୋଇଥିଲା । ପ୍ରାର୍ଥୀମାନଙ୍କୁ ଅର୍ଥ ସାହାଯ୍ୟ ଦାୟିତ୍ୱ ଅଲ୍ ଇଣ୍ଡିଆ

କଂଗ୍ରେସ କମିଟିର ଅଫିସ ଆସିଷ୍ଟେଣ୍ଟ ସୁଶୀଲ ମୁଖାର୍ଜୀଙ୍କୁ ଦିଆହୋଇ ଅର୍ଥ ସଂଗ୍ରହ ଏବଂ ବିତରଣ ସୁରୁଖୁରୁରୂପେ ହୋଇଥିଲା । ମାତ୍ର ଅଭିଜ୍ଞତାରୁ ଜଣା-ଗଲା ଯେ ସମ ପରିମାଣରେ ସବୁ ନିର୍ବାଚନମଣ୍ଡଳୀକୁ ଦେଲେ କେତେକ ସ୍ଥାନରେ ନିର୍ବାଚନ କାର୍ଯ୍ୟ ବ୍ୟାହତ ହେବ ଏବଂ କେତେକ ନିର୍ବାଚନ-ମଣ୍ଡଳୀରେ ପ୍ରାର୍ଥୀମାନେ ଅର୍ଥ ଆତ୍ମସାତ କରିବେ । ମୋ ଜାଣିବାରେ ପ୍ରାୟ ଛତିଶଟି ନିର୍ବାଚନ ମଣ୍ଡଳୀକୁ ବେଶୀ ଅର୍ଥ ଯୋଗାଇଥିଲେ ସେଠି କଂଗ୍ରେସ ଜିତିପାଇ ପାରିଥାଆନ୍ତା । ପ୍ରତ୍ୟେକ ନିର୍ବାଚନମଣ୍ଡଳୀକୁ ସାଢ଼େ ସାତ ହଜାର ଟଙ୍କା ଦେବାର ବରାଦ ହୋଇଥିଲା । ମାତ୍ର ୩୦ ବର୍ଷ ପରେ ଆଜି ଏହା କଳ୍ପନାତୀତ ଭାବରେ ଅତି କମ୍ ଖର୍ଚ୍ଚ ମନେହେବ । ଦୁଇଟି ନିର୍ବାଚନ-ମଣ୍ଡଳୀରେ ପ୍ରାର୍ଥୀ, ଦିଆ ହୋଇଥିବା ସମସ୍ତ ଅର୍ଥ ଆତ୍ମସାତ୍ କଲେ । ଜଣେ ନିଜ କନ୍ୟା ବିବାହରେ ଖର୍ଚ୍ଚ କଲେ, ଆଉ ଜଣେ ବେଙ୍କ୍‌ରେ-ଡିପୋଜିଟ୍ କରିଦେଲେ । ଅର୍ଥ ସଂଗ୍ରହ ମଧ୍ୟ ଠିକ୍ ଭାବରେ ହୋଇପାରିଲା ନାହିଁ । କାରଣ, ବିଗତ ପାଞ୍ଚ ବର୍ଷରେ ଶାସନ ବନ୍ଧୁ ଶ୍ରେଣୀର ଲୋକଙ୍କଠାରୁ ଦୂରେଇ ଯାଇଥିଲା । ସାଧାରଣତଃ ଶିଳ୍ପପତି ଓ ବାଣିଜ୍ୟପତିମାନେ ଅର୍ଥ ସାହାଯ୍ୟ କରି ଥାଆନ୍ତି । ଗାନ୍ଧିଯୁଗର ଦାନ ପ୍ରଥା ତ ଯାଇଛି । ଉପକାର ପ୍ରତ୍ୟୁପକାର ସ୍ୱରୂପ କଂଗ୍ରେସକୁ ଅର୍ଥ ମିଳେ । ଅଶୋକ ମେହେଟାଙ୍କ ମତ ଥିଲା ଯୋଜନା ବାବଦ ଖର୍ଚ୍ଚରୁ କିଛିଅଂଶ ପାର୍ଟି କାମ ପାଇଁ କଟେଇ ଦେବାକୁ ହେବ । ଏହା ହିଁ କେନ୍ଦ୍ର ନେତୃତ୍ୱର ମତ ବୋଲି ଜାଣିଲି । ମାତ୍ର ଛଅମାସ ଶାସନ କାଳରେ ଏହି ସୂତ୍ରକୁ କାର୍ଯ୍ୟକାରୀ କରିବା ସମ୍ଭବ ହେଲା ନାହିଁ । ଯାହାହେଉ, ଖାଲି ଢିପରେ ପଡ଼ି ନିର୍ବାଚନ ସରିଲା । କଂଗ୍ରେସ ଏକକ ସଂଖ୍ୟାଗରିଷ୍ଠ ଦଳ ହେଲା । ଦ୍ୱିତୀୟ ହେଲା ଗଣତନ୍ତ୍ର ପରିଷଦ । ଝାଡ଼ଖଣ୍ଡ ଓ କମ୍ୟୁନିଷ୍ଟ ପାର୍ଟିର ମଧ୍ୟ ସଭ୍ୟ ଥିଲେ । ଝାଡ଼ଖଣ୍ଡ ଦଳର ନେତା ସ୍ୱତଃପ୍ରବୃତ୍ତ ହୋଇ ଏକ ତାରବାର୍ତ୍ତା ପଠାଇଥିଲେ ଯେ ତାଙ୍କ ଦଳ କଂଗ୍ରେସକୁ ସମର୍ଥନ କରିବେ । ତେଣୁ କଂଗ୍ରେସକୁ ଇସ୍ତଫା ଦେବାକୁ ହେବ ନାହିଁ । କମ୍ୟୁନିଷ୍ଟ ପାର୍ଟି ମଧ୍ୟ ସରବ ସମର୍ଥନ ଦେବାକୁ ସ୍ଥିର କଲେ । ଏ ବନ୍ଦୋବସ୍ତ କରାଇଥାଆନ୍ତି ବିଜୁ ପଟ୍ଟନାୟକ ଓ ବୀରେନ୍ ମିତ୍ର । ମାତ୍ର ଏଥିରେ ମୋର ମନ ମାନିଲା ନାହିଁ । କଂଗ୍ରେସ ଇସ୍ତଫା ଦେଉ ଏବଂ ରାଷ୍ଟ୍ରପତି ଶାସନ ଜାରି ହେଉ ବୋଲି କଂଗ୍ରେସ ସଭାପତି ଓ ପ୍ରଧାନ-

ମନ୍ତ୍ରୀଙ୍କ ପାଖକୁ ଟେଲିଗ୍ରାମ କଲି । ସେମାନେ କିନ୍ତୁ ସ୍ଥିର କଲେ ଯେ ଏକ ବରିଷ୍ଠ ଦଳ ହିସାବରେ କଂଗ୍ରେସ ଶାସନର ଦାୟିତ୍ୱ ନେବା ଉଚିତ୍ । ଏହା ହିଁ ସାମ୍ବିଧାନିକ ଦାୟିତ୍ୱ । ଏହାକୁ ଏଡ଼େଇବା ଉଚିତ୍ ନୁହେଁ । ଏ ପ୍ରକାର ବନ୍ଦୋବସ୍ତରେ ରାଜ୍ୟପାଳ ଭୀମସେନ୍ ସାଚ୍ଚର ଅଭ୍ୟସ୍ତ ଥିଲେ । କାରଣ, ସେ ଏକଦା ପଞ୍ଜାବର ମୁଖ୍ୟମନ୍ତ୍ରୀ ଥିଲେ । ସେ ମଧ୍ୟ ମୋତେ ଉତ୍ସାହିତ କଲେ । ଅବଶେଷରେ କଂଗ୍ରେସ ଦଳର ନେତା ହିସାବରେ ମୁଖ୍ୟମନ୍ତ୍ରୀତ୍ୱ ଗ୍ରହଣ କଲି । ଏ ନିର୍ବାଚନରେ ମୋର ଅଭିଜ୍ଞତା ହେଲା ଯେ ସ୍ୱାଧୀନତା ପରେ କଂଗ୍ରେସର ଯେଉଁ ପ୍ରଭାବ ଥିଲା, ତାହା ହ୍ରାସ ପାଇଛି । କଂଗ୍ରେସ ସହିତ ଗାନ୍ଧୀଙ୍କ ନାମ ମିଶି ଅଲକ୍ଷିତ ଭାବରେ ଜନମନରେ ଯେଉଁ ପ୍ରଭାବ ପକାଉଥିଲା, ତାହା ବ୍ୟାପକ ଭୂଦାନ ଆନ୍ଦୋଳନ ଫଳରେ ସମ୍ପୂର୍ଣ୍ଣ ନଷ୍ଟ ହୋଇଯାଇଛି ।

ଯାହାହେଉ, ନିର୍ବାଚନ ପରେ ଏକ ବରିଷ୍ଠ ଦଳ ହିସାବରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ କଲା । ମୋର ମୁଖ୍ୟମନ୍ତ୍ରୀ ହେବା ସ୍ୱାଭାବିକ ଥିଲା । କିନ୍ତୁ ସେତେବେଳେ ଗୁରୁଆଡେ ଉଦ୍‌ଭୂତ ଜଟିଳ ସମସ୍ୟା ଭିତରେ ଧୀର ସ୍ଥିର ଭାବରେ ଯେପରି ଗତି କରିବାର ଥିଲା, ତାହା କରିପାରିଲି ନାହିଁ ବୋଲି ଆଜି ଗଭୀର ଭାବରେ ଅନୁଭବ କରୁଛି । ଭୂଦାନ ଆନ୍ଦୋଳନ, ବନ୍ୟା ସାହାଯ୍ୟରେ ବିଭ୍ରାଟ, ପ୍ରଦେଶ ପୁନର୍ଗଠନ, ଜନ ଆନ୍ଦୋଳନ । ଏଥିରେ ମୋର ଉଚିତ୍ ଥିଲା ଉତ୍ସାହୀ, ତ୍ୟାଗୀ କର୍ମକ୍ଷମ କଂଗ୍ରେସ କର୍ମୀଙ୍କୁ ନେଇ ମନ୍ତ୍ରୀମଣ୍ଡଳ ଗଠନ କରିବା । ତାହା ନ କରି ମୁଁ ଭାବିଲି, ସମାଜରେ ପ୍ରତିଷ୍ଠିତ ବ୍ୟକ୍ତିଙ୍କୁ ନେଇ ମନ୍ତ୍ରୀମଣ୍ଡଳ ଗଠନ କଲେ, ଏହା ଜନମନରେ ବିଶ୍ୱାସ ଆଣି ପାରିବ । ଅନ୍ୟମାନଙ୍କ କଥା ଯାହା ହେଉ, ବିଜୁ ପଟ୍ଟନାୟକ ଓ ବୀରେନ୍ ମିତ୍ର ମନ୍ତ୍ରୀ ହେବା ଉଚିତ୍ ଥିଲା । ସେମାନେ ସେତେବେଳେ କଂଗ୍ରେସ ଅନୁଷ୍ଠାନର ମୁଖ୍ୟ । ମୋତେ ବିରୋଧ କରୁଥିବା ପ୍ରାଦେଶିକ କଂଗ୍ରେସ କମିଟିର କର୍ମକର୍ତ୍ତାମାନଙ୍କ ମଧ୍ୟରୁ ଅନେକେ ନିର୍ବାଚନରେ ହାରିଗଲେ । ଏକ ସମ୍ମାନିତ ମନ୍ତ୍ରୀମଣ୍ଡଳ ଗଠନ କରିବା ପାଇଁ ହାଇକୋର୍ଟର ପୂର୍ବତନ ପ୍ରଧାନ ବିଚାରପତି, ଝଙ୍କିକୋଟ ରାଜବାହାଦୁର, କନିକାର ରାଜବାହାଦୁର, ପ୍ରତିଷ୍ଠିତ ଓକିଲ ଧାନବନ୍ଧୁ ସାହୁ, 'ସମାଜ' ସମ୍ପାଦକ ରାଧାନାଥ ରଥ ପ୍ରଭୃତିଙ୍କୁ ମନ୍ତ୍ରୀମଣ୍ଡଳରେ ନିଆ ହେଲା । ଏମାନେ କଂଗ୍ରେସ

ଛିକଟରେ ନିଜ ବଳରେ ନିର୍ବାଚନରେ ଜିତିଥିଲେ । ଗଣତନ୍ତ୍ରରେ ମନ୍ତ୍ରୀ-ମଣ୍ଡଳ ଗଠନରେ ଦଳର ନେତା ଓ ଦଳପ୍ରତି ଆନୁଗତ୍ୟ ହେଉଛି ପ୍ରଥମ ସର୍ତ୍ତ । ମୁଁ ଭାବିଲି ଏମାନେ କାଳକ୍ରମେ ଏ ସର୍ତ୍ତ ଗ୍ରହଣ କରିବେ । ମାତ୍ର କେତେକଙ୍କ ପକ୍ଷରେ ତାହା ହେଲା ନାହିଁ । ମୋର ଏହି ଗୁରୁତ୍ୱପୂର୍ଣ୍ଣ ଭ୍ରମ ହେତୁ ଓଡ଼ିଶାର ରାଜନୀତି, ଯାହା କି ସ୍ୱାଭାବିକ ଗତିରେ ଚାଲିଥାଆନ୍ତା, ତାହା ହୋଇପାରିଲା ନାହିଁ । ପରବର୍ତ୍ତୀ ଘଟଣାମାନଙ୍କରୁ ଏହା ପାଠକମାନେ ଜାଣିବେ ।

୧୯୫୭, ୭ ଏପ୍ରିଲ ମନ୍ତ୍ରୀମଣ୍ଡଳ :—

୧ । ହରେକୃଷ୍ଣ ମହତାବ
୨ । ଲିଙ୍ଗରାଜ ପାଣିଗ୍ରାହୀ
୩ । ଦୀନବନ୍ଧୁ ସାହୁ
୪ । ସତ୍ୟପ୍ରିୟ ମହାନ୍ତି
୫ । ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ
୬ । ବସନ୍ତ ମଞ୍ଜରୀ ଦେବୀ
୭ । ନୀଳମଣି ରାଉତରାୟ
୮ । ପବିତ୍ର ମୋହନ ପ୍ରଧାନ
୯ । ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ
୧୦ । ରାଧାନାଥ ରଥ

ଶାସନ ଅପସରି ଯିବାରୁ ଭୂଦାନ ସଂଗଠନ ବସ୍ତୁତଃ ଅଚଳ ହୋଇଗଲା । ବିନୋବାଜୀଙ୍କଠାରେ ଆପତ୍ତି ପହଞ୍ଚିଲା ମୋ ବିରୁଦ୍ଧରେ । ପ୍ରସଙ୍ଗକ୍ରମେ ଏହା ଉଲ୍ଲେଖଯୋଗ୍ୟ ଯେ ଭୂଦାନ ସମ୍ବନ୍ଧରେ ଏକ ବକ୍ତୃତାରେ ସମାଲୋଚନା କରି କହିଥିଲି ଯେ ଏହା ଭୂମିବଣ୍ଟନ ନୁହେଁ, ଏହା ହେଉଛି ଦରିଦ୍ରତା ବଣ୍ଟନ । ଏହା ବିନୋବାଜୀଙ୍କ ଭକ୍ତମାନଙ୍କୁ ବଡ ବାଧିଲା । ମୋର ଯୁକ୍ତି ଥିଲା ଯେ ଜମି କଣ୍ଟି କଣ୍ଟି ସମସ୍ତଙ୍କୁ ବାଣ୍ଟିଦେଲେ କେହି ଆଉ ନିମ୍ନମଧ୍ୟବିତ୍ତ ଚାଷୀ ରହିବେ ନାହିଁ । ଅଥଚ ବାଣିଜ୍ୟ ଯେଉଁମାନେ କରୁଛନ୍ତି, ସେମାନେ ଧନୀ ଓ ଆହୁରି ଧନୀ ହେଉଥିବେ । ଚାଷୀ ମଧ୍ୟବିତ୍ତ ହେବାକୁ ହେଲେ ଯେତିକି ଜମି ଦରକାର, ସମସ୍ତଙ୍କୁ ବାଣ୍ଟିବା ପାଇଁ ସେତେ ଜମି ନାହିଁ । କୃଷି ସହିତ ଗ୍ରାମୋଦ୍ୟୋଗ ହେଉଛି ଗାନ୍ଧୀଜୀର ମୂଳତତ୍ତ୍ୱ, ଜମି ବଣ୍ଟନ ନୁହେଁ । ଯାହାହେଉ, ବିନୋବାଜୀଙ୍କ ପାଖକୁ ଆପତ୍ତିମାନ ଗଲା ।

ସେତେବେଳେ ବିନୋବାଜୀ ମହୀଶୂରର ୟେଲ୍‌ମାଲ୍ ଗ୍ରାମରେ ଥିଲେ । ସେଠାରେ ଗ୍ରାମଦାନ ପରିଷଦର ଏକ ସ୍ୱତନ୍ତ୍ର ବୈଠକ ଖ୍ରୀ: ୧୯୫୭ ସେପ୍‌ଟେମ୍ବର ତା ୨୧ ରିଖକୁ ଡକାହେଲା । ଗ୍ରାମଦାନ ସମ୍ବନ୍ଧରେ, ବିଶେଷତଃ କୋରାପୁଟରେ, ଯେଉଁ ଆଇନଗତ ପ୍ରଶାସନିକ ବାଧା ଉପୁଜୁଛି, ତାହାର ବିଚାର କରିବା ପାଇଁ । ପ୍ରଧାନମନ୍ତ୍ରୀ, ଗୋବିନ୍ଦବଲ୍ଲଭ ପନ୍ଥ, ଜୟପ୍ରକାଶ ନାରାୟଣ ପ୍ରମୁଖ ବ୍ୟକ୍ତିଙ୍କୁ ନିମନ୍ତ୍ରଣ କରାହୋଇଥିଲା । ସେମାନେ ଆସିଥିଲେ । ମୋ'ର ପାଇଁ ଯେତେବେଳେ ବୈଠକ ବସିଛି, ମୁଁ ମଧ୍ୟ ଯାଇଥିଲି । ପୁଙ୍ଖାନୁପୁଙ୍ଖ ରୂପେ ସବୁ ଆଲୋଚନା ହେଲା । ମୁଁ ଯୁକ୍ତି କଲି— ଯଦି ଶାସନ ଜରିଆରେ ଭୂଦାନ ଗ୍ରାମଦାନ ହେବ, ତେବେ ବେସରକାରୀ ସଂସ୍ଥାର ମହତ୍ତ୍ୱ ରହିବ ନାହିଁ । ଜବାହରଲାଲ ମୋତେ ଦୃଢ଼ ଭାବରେ ସମର୍ଥନ କଲେ । ଶେଷରେ ଏକ ପ୍ରସ୍ତାବ ଗୃହୀତ ହେଲା – ଗ୍ରାମଦାନ ନାମରେ ଯେଉଁ ନବନିର୍ମାଣ କାମ ଚାଲିଛି, ତା'ର ସୁବିଧା ଲାଗି ଉପୁଜୁଥିବା ଅସୁବିଧାମାନ ଦୂରୀକରଣ ପାଇଁ ନିମ୍ନଲିଖିତ ବ୍ୟକ୍ତିମାନଙ୍କୁ ନେଇ ଏକ କମିଟି ଗଠନ କରାହେଲା :—

୧ । ଗୋବିନ୍ଦବଲ୍ଲଭ ପନ୍ଥ
୨ । ମୋରାରଜୀ ଦେଶାଇ
୩ । ଗୁଲଜାରିଲାଲ ନନ୍ଦା
୪ । ହରେକୃଷ୍ଣ ମହତାବ
୫ । ନବକୃଷ୍ଣ ଚୌଧୁରୀ
୬ । ରାମକୃଷ୍ଣ ପାଟିଲ
୭ । ଆଣ୍ଣା ସାହେବ ସହସ୍ରବୁଦ୍ଧେ (ରାୟଗଡ଼ା, କୋରାପୁଟ)

ଏ ବୈଠକ ପରେ ମୁଁ ନିମ୍ନଲିଖିତ ସରକାରୀ ବିବୃତି ଦେଲି । ଏ ବିବୃତିକୁ କଂଗ୍ରେସ ସଭାପତିଙ୍କଠାକୁ ପଠାଇଲି । ସେ ଏଥିରେ ଏକମତ ହେଲେ ।

## STATEMENT ISSUED BY THE CHIEF MINISTER, ORISSA,

on 25th September 1957

I invite the attention of the public of Orissa to the statement which has been issued by the All Party Gramdan

Parishad which was held in Mysore on the 21st and 22nd last and which was attended by Shri Jawaharlal Nehru and other representatives of the Central Government and Chief Ministers of many States including myself. The statement expresses high appreciation of Shri Vinobaji's mission and his efforts to solve national and social problems by non-violent and co-operative methods and appeals to all sections of the people to give his mission their enthusiastic support. The Gramdan movement of Shri Vinobaji has assumed considerable importance in Orissa, particularly in the district of Koraput. The Gramdan movement is expected to lead to a fuller development of co-operative life and effort in the villages concerned and would also result in the economic betterment of the people of these villages and all-round progress and development. It is further expected to create a psychological climate all over India for the solution of land problems and furtherance of co-operative life. The essential feature of the Gramdan movement is its voluntary character and its freedom from any kind of coercion from any quarter. From the side of the Government community development has been taken up on a large scale and in a few years all the villages are to be covered by development blocks. Close co-operation between Gramdan movement and the Community Development is essential for the purpose of pooling all resources for the development of the villages. Since success of the Gramdan movement rests entirely on its voluntary character, it is not desirable in the interest of the movement itself that the administrative machinary of the Government should be associated with it at the initial stages of collecting gifts as the land-gift should be a cent percent voluntary effort. Government would not come into the picture at all at this stage of the movement. But at the next stage when the work of development is taken up in the Gramdan villages, close co-operation of various organs of administration, particularly in Community Development and National Extension Service areas, is called for. In order

to bring about this co-operation, representatives of the Sarva Seva Sangha, which has taken up the work in Koraput, will be on the Direct Development Board and also Block Advisory Committees wherever the Blocks have been opened.

It is understood that some of the laws, such as, the Money-lenders' Act, the Goti Act, the Tenancy Relief Act etc are not working properly in the district of Koraput. Since it is the intention of Government that these Acts calculated to bring about social and economic reforms should work properly everywhere, it has been decided to set up a Committee consisting of the District Officers, representatives of the people and of social organisations, such as the Sarva Seva Sangha, to find out how the above Acts are working and what other steps are to be taken to make them more effective. While the administrative machinery should not be used for the furtherance of voluntary and missionary movements undertaken by non-official organisations, Government do wish all success to such movements which will uplift people socially, morally and economically. I am sure the position of Government as such will be understood both by the public and by their own officers. While the officers are not expected to actively participate in the Gramdan Movement till it reaches its final stage when development work is undertaken, they are expected to have sympathy and good wishes for its success. I hope on this basis, there will be some solid constructive work in Koraput which will definitely alleviate the condition of the tribal population in a few years.

**ALL INDIA CONGRESS COMMITTEE**

Telegram—CONGRESS
7 Jantar Mantar Road,
New Delhi-1
October 12, 1957
G-I (S) 226-8

My dear Shri Mahtab Babu,

I am in receipt of your letter of the 4th October enclosing therewith a copy of a statement issued by you about

Gramadan. As a matter of fact, I had seen the statement during my tour of Andhra and I was very much pleased with it. I am sure no difficulty is likely to arise now. However, my services are at your disposal whenever you may want it.

Yours sincerely,
Sd. U. N. Dhebar

Sri Harekrushna Mahtab
Chief Minister, Orissa
Bhubaneswar.

ଗାନ୍ଧିଜୀଙ୍କ ରଚନାତ୍ମକ କାର୍ଯ୍ୟ ପରିବର୍ତ୍ତେ ସମ୍ପୂର୍ଣ୍ଣ କ୍ରାନ୍ତିର ସ୍ୱର ଉଠିଲା ଏବଂ ଭୂଦାନ ଓ ଗ୍ରାମଦାନ ମାଧ୍ୟମରେ ଏହା ସାଧିତ ହେବ ବୋଲି ପ୍ରଚାରିତ ହେଲା । ଏହି ପ୍ରସଙ୍ଗରେ ଖ୍ରୀ: ୧୯୫୫ରେ ବିନୋବାଜୀଙ୍କର ଯେଉଁ ବିପ୍ଳବାତ୍ମକ କାର୍ଯ୍ୟକ୍ରମ ଆରମ୍ଭ ହେବାର ଥିଲା, ତାହାର ସୂଚନା ମୁଁ ବମ୍ବେରେ ପ୍ରସିଦ୍ଧ ରଚନାତ୍ମକ କର୍ମୀ ଶ୍ରୀ ବୈକୁଣ୍ଠ ଲାଲ ମେହେଟାଙ୍କ ଠାରୁ ଶୁଣିଥିଲି । ଓଡ଼ିଶାରେ ନିଖିଳ ଭାରତ କଂଗ୍ରେସ କମିଟି ଆହୂତ ହୋଇଥିଲା । ସେ ମିଟିଂରେ ବିନୋବାଜୀ ଆହ୍ୱାନ କରିବାର ଥିଲା — ଶାସନର ପଦ-ପଦବୀରୁ ଇସ୍ତଫା ଦେଇ ସମ୍ପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନରେ ଯୋଗ ଦେବାପାଇଁ । ନବବାବୁ ଓ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ ପ୍ରଥମେ ଇସ୍ତଫା ଦେବେ । ମୁଁ ରାଜ୍ୟପାଳ ଥିଲେ ମଧ୍ୟ ଓଡ଼ିଶାରେ ଅନୁଷ୍ଠିତ ନିଖିଳ ଭାରତ କଂଗ୍ରେସ କମିଟିରେ ଯୋଗ ଦେବାପାଇଁ ଆମନ୍ତ୍ରଣ ରକ୍ଷା କରିବା ଥିଲା ସାଧାରଣ ସୌଜନ୍ୟ । କିନ୍ତୁ ସେଠାକାର କାର୍ଯ୍ୟକ୍ରମ ବିଷୟ ଜାଣି ମୁଁ ଭାବିଲି, ମୋତେ ଇସ୍ତଫା ଦେବାକୁ ଆହ୍ୱାନ କରାଗଲେ ମୁଁ ଅସୁବିଧାରେ ପଡ଼ିବି । ରାଜେନ୍ଦ୍ର ବାବୁଙ୍କୁ ପଚାରି ବୁଝିଲି ଯେ, ତାଙ୍କୁ ଇସ୍ତଫା ଦେବାକୁ କୁହାଯାଇଛି । ମାତ୍ର ତାଙ୍କର ବ୍ୟକ୍ତିଗତ ସମସ୍ୟା ହେତୁ ସେ ଇସ୍ତଫା ଦେବେନାହିଁ । ଜବାହରଲାଲଜୀଙ୍କ ଠାରୁ ବୁଝିଲି, ସେ ଏ କାର୍ଯ୍ୟକ୍ରମ ସମ୍ବନ୍ଧରେ କିଛି ବୁଝିନାହାନ୍ତି ବୋଲି କହିଲେ । ବ୍ରହ୍ମପୁରରେ ନିଖିଳ ଭାରତ କଂଗ୍ରେସ କମିଟି ବୈଠକ ହେଲା । ସେ ବୈଠକରେ ମୁଖ୍ୟ ହୋଇଗଲେ ଜବାହରଲାଲ ନେହେରୁ ।



୧୩ ଜାନୁଆରୀ ୧୯୫୭ : ହୀରାକୁଦ ଜମାଦାରପାଲିଠାରେ ପଣ୍ଡିତ ନେହେରୁଙ୍କୁ
ଡକ୍ଟର ମହତାବଙ୍କ ସମ୍ବର୍ଦ୍ଧନା



ହୀରାକୁଦ ନଦୀବନ୍ଧ ଯୋଜନାର ଉଦ୍‌ଘାଟନ ଅବସରରେ ଗୁଲଜାରୀଲାଲ ନନ୍ଦା ଓ
କୈଳାସନାଥ କାଟଜୁ ପ୍ରମୁଖଙ୍କ ସହିତ ଡକ୍ଟର ମହତାବ୍



ହୀରାକୁଦ ନଦୀବନ୍ଧ ଯୋଜନାର ଉଦ୍‌ଘାଟନ ଅବସରରେ ଆୟୋଜିତ ଉତ୍ସବରେ ଉଦ୍‌ବୋଧନ



ଭୁବନେଶ୍ୱରର ପ୍ରସିଦ୍ଧ ରାଜାରାଣୀ ମନ୍ଦିର ପରିଦର୍ଶନ ବେଳେ ପଣ୍ଡିତ ନେହେରୁଙ୍କ ସହିତ
ଡକ୍ଟର ମହତାବ

ଆଇନ୍ ଏବଂ ଅର୍ଥ କଂଗ୍ରେସର ଜଟିଳ ସମସ୍ୟା ଥିଲା । ବନ୍ୟା ସାହାଯ୍ୟ ପାଇଁ ଭାରତ ସରକାର ଯେଉଁ ଅର୍ଥ ଦେଇଥିଲେ, ତାହାଠାରୁ ବହୁତ ବେଶୀ ଖର୍ଚ୍ଚ ହୋଇଯାଇଥିବାରୁ ହିସାବ ଦିଆଯାଇ ପାରୁନାହିଁ । ଅର୍ଥମନ୍ତ୍ରୀ ରାଧାନାଥ ରଥ କହୁଥା'ନ୍ତି, ତାଙ୍କୁ କୁଆଡ଼େ କେନ୍ଦ୍ର ଅର୍ଥମନ୍ତ୍ରୀ କହିଥିଲେ, ଯେତେ ଦରକାର ଖର୍ଚ୍ଚ କର । ବନ୍ୟା ରିଲିଫ ନାମରେ କଟକର ରାସ୍ତା ସବୁ ପିଚୁ କରି ଦିଆ ହୋଇଥିଲା । ଆର୍ଥିକ ବିଶୃଙ୍ଖଳାକୁ ସୁଧାରିବା ପାଇଁ କେନ୍ଦ୍ର ଅର୍ଥମନ୍ତ୍ରୀ ଟି. ଟି. କୃଷ୍ଣମାଚାରୀଙ୍କୁ ଭୁବନେଶ୍ୱର ଡାକି, ତାଙ୍କ ସହିତ ବିସ୍ତୃତ ଆଲୋଚନା କଲି । ସିଦ୍ଧାନ୍ତ ହେଲା, ଭାରତ ସରକାରଙ୍କ ମଞ୍ଜୁରି ଖର୍ଚ୍ଚ ବାହାରେ ଯେତେ କୋଟି ଟଙ୍କା ରିଲିଫ୍ ନାମରେ ଖର୍ଚ୍ଚ ହୋଇଛି, ତାକୁ ଓଡ଼ିଶା ସରକାରକୁ ଋଣ ହିସାବରେ କେନ୍ଦ୍ର ଦେଉ । ଏହା ହିଁ ସ୍ଥିର ହେଲା । ଭୂଦାନ ଓ ଗ୍ରାମଦାନ ଆନ୍ଦୋଳନରେ ଶାସନରେ ଯେଉଁ ବିଶୃଙ୍ଖଳା ଘଟିଥିଲା, ତାହା ସୁଧାରିବା ପାଇଁ ପ୍ରାୟ ବର୍ଷେ ଲାଗିଲା । ମନ୍ତ୍ରିମଣ୍ଡଳ ଗଠନର ଅବ୍ୟବହିତ ପରେ ସରକାରୀ ନିର୍ଦ୍ଦେଶ ହେଲା, ପୋଲିସ ବା ମାଜିଷ୍ଟ୍ରେଟ କେହି ଭୂମିଦାନ କରିବା ଲାଗି କାହାରିକୁ ବାଧ୍ୟ କରିବେ ନାହିଁ । ଏଥିରେ ଶାସନ ସମ୍ପୂର୍ଣ୍ଣ ନିରପେକ୍ଷ ରହିବ । ମୋତେ ଆଶ୍ଚର୍ଯ୍ୟ ଲାଗିଲା, ଯେତେବେଳେ କେତେକ ବିଶିଷ୍ଟ ଭୂଦାନ ନେତା ମୋତେ ଆସି କହିଲେ, ଯଦି ପୋଲିସ୍ ସାହାଯ୍ୟ ନ କରେ, ତେବେ ଭୂଦାନ କାର୍ଯ୍ୟ ଆଦୌ ଆଗେଇବ ନାହିଁ । ସେତେବେଳେ ଭୂଦାନ ଓ ଗ୍ରାମଦାନ କାର୍ଯ୍ୟ ବ୍ୟାପକ ଭାବରେ କୋରାପୁଟରେ ଚାଲିଥାଏ । 'ସର୍ବ ସେବା ସଂଘ'ର ପ୍ରତିଷ୍ଠିତ ନେତା ସହସ୍ରବୁଦ୍ଧେ ପ୍ରଭୃତି କୋରାପୁଟରେ ରହିଥାଆନ୍ତି । କୋରାପୁଟ ଏକ ନିତାନ୍ତ ଅନୁନ୍ନତ ଆଦିବାସୀ ଅଞ୍ଚଳ । ସେଠାରେ ଜମିଜମା ବନ୍ଦୋବସ୍ତ କେବେ ହୁଏ ନାହିଁ । ଗାଁର ଯେ ମୁଖ୍ୟ, ସେ କିଏ, କେତେ ଜମି ଚାଷ କରିବ, ବର୍ଷ ଆରମ୍ଭରେ ବଣ୍ଟନ କରିଦିଏ । ଏହି ବଣ୍ଟନ ସମୟରେ ପୋଲିସ୍ ସାହାଯ୍ୟରେ ଭୂଦାନ ନାମରେ କିଛି ଜମି ଦିଆହୁଏ । ପୁଣି ମୁଖିଆ ମଧ୍ୟ ଗ୍ରାମର ସମସ୍ତ ଜମି ଭୂଦାନକୁ ଦାନ କରିଥିଲେ, ତାହାକୁ ଗ୍ରାମଦାନ କୁହାଯାଉଥିଲା । ପ୍ରଚୁର ସରକାରୀ ଅର୍ଥ ଏହି କାର୍ଯ୍ୟ ପାଇଁ ଭୂଦାନ ସଂଘକୁ ଦିଆ ହେଉଥିଲା । ଏପରିକି ଗୋଟିଏ ବ୍ଲକ୍'ପାଇଁ ଗ୍ରାମଗୋଷ୍ଠୀ ଯୋଜନା ବାବଦରେ ଯେଉଁ

ଅର୍ଥ, ତାକୁ ଭୂଦାନ ସଂଗଠନକୁ ଦିଆଯାଉଥିଲା । ଜମିଜମା ସଂକ୍ରାନ୍ତରେ କୌଣସି ଆଇନ ନ ଥିବାରୁ ଦାନ ଜମି ସମ୍ବନ୍ଧରେ ବିବାଦ ମଧ୍ୟ ହେଉଥିଲା । ପୋଲିସ ସାହାଯ୍ୟ ନ ମିଳିବାରୁ ସରକାରୀ ଅର୍ଥ ଏପରି ଅପବ୍ୟୟ ହେଲା ଯେ, ଶ୍ରୀ ବୁଦ୍ଧେ ଏଥିପାଇଁ ଅନଶନ କରିଥିଲେ । ଚିଫ୍ ସେକ୍ରେଟାରୀଙ୍କୁ ଦାୟିତ୍ୱ ଦିଆଯାଇଥିଲା ଭୂଦାନ ଓ ଗ୍ରାମଦାନ କାର୍ଯ୍ୟ ପରିଦର୍ଶନ କରିବା ପାଇଁ । ଏଥିରେ ଭୂଦାନ ନେତାମାନେ ଅସନ୍ତୁଷ୍ଟ ହେଲେ । ଆନ୍ଦୋଳନ ଚାଲିଲା, ଲୋକେ ଅନାହାରରେ ମଲେଣି । ଏ ସମ୍ପର୍କରେ ମୁଁ ଉତ୍ତର ଦେଇଥିଲି, ମୁଁ ନେତା ନୁହେଁ, ମୁଁ ଜଣେ କର୍ମୀ । ଗ୍ରାମବାସୀମାନଙ୍କ ଦୁଃଖ ସୁଖ ମୋତେ ଯେତେ ଜଣା, ସେପରି କୌଣସି ଭୂଦାନ କର୍ମୀ ବା ନେତାଙ୍କୁ ଜଣା ନ ଥିବ ।

କେବଳ ଭୂଦାନ ପ୍ରସ୍ତାବ ଆଗତ କରି ବିନୋବାଜୀ ଗୌଣ ହୋଇଗଲେ । ଏ ବିଷୟଟି ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଉଛି, ଓଡ଼ିଶାରେ ଭୂଦାନ ଆନ୍ଦୋଳନ କିପରି ଶାସନକୁ ଗ୍ରାସ କରିଯାଇଥିଲା, ତାହା ଦର୍ଶାଇବା ।

ମନ୍ତ୍ରିମଣ୍ଡଳ ଗଠନ ପରେ କେତୋଟି କାର୍ଯ୍ୟ ଉପରେ ଜୋର ଦେଲି । ଭୁବନେଶ୍ୱରରେ ରାଜଧାନୀ ନିର୍ମାଣ ପୂର୍ବତନ ମନ୍ତ୍ରିମଣ୍ଡଳ ସମୟରେ ପରିତ୍ୟକ୍ତ ହୋଇଥିଲା । ଏହାକୁ ପଞ୍ଚବାର୍ଷିକ ଯୋଜନାର ଅନ୍ତର୍ଭୁକ୍ତ କରାଇ ଭୁବନେଶ୍ୱରରେ ରାଜଭବନ ନିର୍ମାଣ, ବିଧାନସଭା ଭବନ ନିର୍ମାଣ, ମିଉଜିୟମ୍ ନିର୍ମାଣ, ରାଜଧାନୀରେ ଏକ ପ୍ରଥମ ଶ୍ରେଣୀ କଲେଜ ପ୍ରତିଷ୍ଠା—ଏସବୁ କାର୍ଯ୍ୟ ଜୋର୍‌ସୋର୍‌ରେ ଚାଲିଲା । ପୂର୍ବତନ ମନ୍ତ୍ରିମଣ୍ଡଳ ସମୟରେ ଗ୍ରାମାଞ୍ଚଳ ପାଇଁ ସ୍ୱତନ୍ତ୍ର ଶିକ୍ଷାପଦ୍ଧତିର ସ୍ୱର ତତ୍କାଳୀନ କେନ୍ଦ୍ର ଶିକ୍ଷାମନ୍ତ୍ରୀ ଉଠାଇ ଥିଲେ । ତଦନୁସାରେ ଅନୁଗୁଳରେ ଏକ ଗ୍ରାମାଞ୍ଚଳ କଲେଜ ପାଇଁ ଗୃହ ନିର୍ମାଣ କରାଯାଇଥିଲା । କିନ୍ତୁ ଏ ଶିକ୍ଷାପଦ୍ଧତି ଯେ ବହୁ ଦିଗରୁ ଦୋଷାବହ, ଏହା ବିଷୟରେ ଥିଲାବେଳେ ସବୁ ବିଶ୍ୱବିଦ୍ୟାଳୟରେ ଭାଷଣରେ କହୁଥିଲି, ଏବଂ ବିଶିଷ୍ଟ ଶିକ୍ଷାବିତ୍‌ମାନଙ୍କ ସମର୍ଥନ ମଧ୍ୟ ପାଇଥିଲି । ତେଣୁ ଅନୁଗୁଳରେ ଗ୍ରାମ୍ୟ କଲେଜ ପରିବର୍ତ୍ତେ ସାଧାରଣ କଲେଜ ସ୍ଥାପିତ ହେଲା ଏବଂ ଗ୍ରାମ୍ୟ

ଶିକ୍ଷାପଦ୍ଧତି ପରିତ୍ୟକ୍ତ ହେଲା । ନବକୃଷ୍ଣ ଚୌଧୁରୀ ମୌଳିକ ଶିକ୍ଷାପଦ୍ଧତି ଉପରେ ଜୋର୍ ଦେଉଥିଲେ । ସେହି ପଦ୍ଧତିକୁ ପରିବର୍ତ୍ତନ କରି ପ୍ରଚଳିତ ଶିକ୍ଷାପଦ୍ଧତିର ସ୍ରୋତ ମଧ୍ୟକୁ ଅଣା ହେଲା । ଫଳରେ ଛାତ୍ରସଂଖ୍ୟା ବୃଦ୍ଧି ପାଇଲା ଏବଂ ମୌଳିକ ସ୍ତରରୁ ଉପରକୁ ଯିବା ପାଇଁ ସେମାନଙ୍କର ସୁବିଧା ହେଲା । ମୌଳିକ ଶିକ୍ଷାକୁ ବିଶ୍ୱବିଦ୍ୟାଳୟ ଶିକ୍ଷା ସହିତ ସଂଯୁକ୍ତ ନ କରାଗଲେ ମୌଳିକ ଶିକ୍ଷା ଆଦୃତ ହେବ ନାହିଁ, ଏବଂ ଏହାର ମୂଲ୍ୟ କିଛି ରହିବ ନାହିଁ । ଏହା ବିଚାର କରିବାକୁ ଗାନ୍ଧିଜୀ ସମୟ ପାଇ ନ ଥିଲେ । ଅନ୍ୟ କେହି ମଧ୍ୟ ଏ ଦିଗରେ ଦୃଷ୍ଟି ନେଲେ ନାହିଁ । ତେଣୁ ମୌଳିକ ସ୍କୁଲଗୁଡ଼ିକ ସ୍ଥାଣୁ ଅବସ୍ଥାକୁ ଆସି ଯାଇଥିଲା । ଏହାର ସଂସ୍କାର କରିବାକୁ ହେଲା ।

ଖ୍ରୀ: ୧୯୫୨ରୁ ତଥାକଥିତ ଗ୍ରାମଗୋଷ୍ଠୀ ଯୋଜନା କାର୍ଯ୍ୟକ୍ରମ ଆରମ୍ଭ ହୋଇଥିଲା । ଏ ଯୋଜନାନୁସାରେ ପ୍ରତ୍ୟେକ ବ୍ଲକକୁ ପ୍ରଥମାବସ୍ଥାରେ ଛଅଷଠି ଲକ୍ଷ ଟଙ୍କା, ଦ୍ୱିତୀୟ ପର୍ଯ୍ୟାୟରେ ପଚିଶ ଲକ୍ଷ ଟଙ୍କା ଓ ତୃତୀୟ ପର୍ଯ୍ୟାୟରେ ତିରିଶ ଲକ୍ଷ ଟଙ୍କା ବ୍ୟୟର ବରାଦ ହେଉଥିଲା । ଏହାପରେ ଗ୍ରାମବାସୀମାନେ, ଆରମ୍ଭ ହୋଇଯାଇଥିବା ସବୁ କାର୍ଯ୍ୟକୁ ଟେକ୍ସ ଆକାରରେ ନିଜସ୍ୱ ଦାନ ଦେଇ ଚଳାଇ ନେବେ, ଏହା ହିଁ ଥିଲା ଉଦ୍ଦେଶ୍ୟ ; ଏ ଯୋଜନାଟି ଏପରି ଭ୍ରମାତ୍ମକ ଏବଂ ଅବାସ୍ତବ ଯେ, ସେ ସମ୍ବନ୍ଧରେ ବ୍ୟୟ ହୋଇଥିବା ଅର୍ଥ ପାଣିରେ ପଡ଼ିଗଲା ପରି ହୋଇଗଲା । ପ୍ରଥମତଃ ଅର୍ଥ ବ୍ୟୟ କରି ଲୋକଙ୍କ ଚଳଣି ମାନ ବଦଳାଇ ଦେଲେ, ସେମାନେ ତଦନୁପାତରେ ଆୟ ନ କଲେ, ସେହି ମାନ ଅନୁସାରେ ଖର୍ଚ୍ଚ କରି ଚଳିପାରିବେ ନାହିଁ—ଏ ସରଳ ସତ୍ୟଟି ଆମେରିକା ପ୍ରସ୍ତୁତ ଯୋଜନାରେ ସମ୍ପୂର୍ଣ୍ଣ ବିସ୍ମୃତ ହେଲା। କେନ୍ଦ୍ରମନ୍ତ୍ରୀ ଥିଲାବେଳେ ଏ ଯୋଜନାର ବିରୋଧ କରି କେବଳ ମୁଁ ନୁହେଁ, ମୋ' ସହିତ ଅନେକ କେନ୍ଦ୍ରମନ୍ତ୍ରୀ ମଧ୍ୟ ସ୍ୱର ଉଠାଇଥିଲେ । କିନ୍ତୁ ଜବାହରଲାଲ ଏ ଯୋଜନା ପାଇଁ ଏପରି ପାଗଳ ଥିଲେ ଯେ, ଏସ୍. କେ. ଦେ ନାମକ ଛଳନାପ୍ରବଣ ଜଣେ ମନ୍ତ୍ରୀ ତାଙ୍କୁ ବାସ୍ତବ ଅବସ୍ଥା ଜଣାଇବାକୁ ଦେଲେ ନାହିଁ । ବ୍ଲକ୍ କାର୍ଯ୍ୟ ଆରମ୍ଭ ହେବାରୁ ଲୋକେ କିଛି କରୁ ନ ଥିଲେ । ଏପରିକି ବାଡ଼ିରେ ପନିପରିବା କରୁ-

ନ ଥିଲେ ବା ଗ୍ରୁଷର ଉନ୍ନତି ପାଇଁ ଉଦ୍ୟମ କରୁ ନ ଥିଲେ ବା ଚକାହ୍ରା ପାଇଁ ଆଦୌ ମନ ବଳାଉ ନ ଥିଲେ । ତାହାର ଯୋଗୁ ଯେତିକ ଆୟ, ସେଥିରେ ସେମାନେ ଚଳିବା ପାଇଁ ପ୍ରାଣପଣେ ଉଦ୍ୟମ କରୁଥିଲେ । ଏ ଅବସ୍ଥାକୁ ସୁଧାରିବା ପାଇଁ ବ୍ୟାପକ ଖର୍ଚ୍ଚର ଯୋଜନା । ମାତ୍ର ଆୟର ବ୍ୟବସ୍ଥା କରୁ ନାହିଁ । ଏହି ବ୍ୟର୍ଥତାକୁ କାଗଜପତ୍ରରେ ଲୁଚାଇବା ପାଇଁ ଏସ୍. କେ. ଦେଙ୍କ ନିର୍ଦ୍ଦେଶରେ ଏପରି ମିଥ୍ୟା ରିପୋର୍ଟ ପ୍ରସ୍ତୁତ ହେଲା ଏବଂ ଏପରି ଛଳନାମୟ ତ୍ରୁଟିର ହେଲା, ଯାହା ଆଜି ଜାଣିଲେ ଲଜ୍ଜା ହେବ, କିପରି ପ୍ରଧାନମନ୍ତ୍ରୀ ଏଥିରେ ପ୍ରଭାବିତ ହେଉଥିଲେ । ଉଦାହରଣ ସ୍ୱରୂପ, ଜବାହରଲାଲଙ୍କ ଜନ୍ମଦିନ ନଭେମ୍ବର ତା ୧୪ ରିଖ । ସେବର୍ଷ ଯେତେଆଡ଼େ ପ୍ରାଥମିକ ସ୍କୁଲ ସବୁ ସ୍ଥାନୀୟ ଉଦ୍ୟମରେ ସ୍ଥାପିତ, ଯେତେ ବାଡ଼-ବଗିଚାରେ ଫସଲ ହେଉଛି, ତାହାର ଫଟୋ ଓ ବରିଷ୍ଠ ସମ୍ମାନ ଆୟୋଜନ କରାଯାଇ ତାହାର ଫଟୋ ଜବାହରଲାଲଙ୍କୁ ଏସ୍. କେ. ଦେ ଉପହାର ଦେଇଥିଲେ ! ସମଗ୍ର ଦେଶର ଏଭଳି ରିପୋର୍ଟ ଯେକୌଣସି ବ୍ୟକ୍ତି ଦେଖିଲେ ଅଭିଭୂତ ହୋଇଯିବ । କିନ୍ତୁ ଏସବୁ ଯେ ବ୍ଲକ୍ ଯୋଜନାର ଅନ୍ତର୍ଭୁକ୍ତ ନୁହେଁ, ଏହା ଜଣାଇବା ପାଇଁ ପ୍ରଧାନମନ୍ତ୍ରୀଙ୍କୁ ସୁବିଧା ଦିଆହେଲା । ବ୍ଲକ୍ ପରିଚାଳନାକୁ ସାଧାରଣ ଶାସନର ବାହାରେ ରଖାହେଲା । ତଳେ ବ. ଡ଼. ଓ. ଓ ଉପରେ ଏସ୍. କେ. ଦେ ମନ୍ତ୍ରୀ ଏବଂ ମଝିରେ ଚିଫ୍ ସେକ୍ରେଟାରୀ—ଏହି ହେଲା ଶାସନ । ଏପରିକି ସବ୍‌ଡିଭିଜନାଲ ଅଫିସର, ଜିଲ୍ଲା ମାଜିଷ୍ଟ୍ରେଟ୍, କମିଶନର ବା ଅନ୍ୟ ବିଭାଗର ଅଫିସରମାନଙ୍କ ସହିତ ବ୍ଲକ୍ ପରିଚାଳନାର ସମ୍ପର୍କ ରହିଲା ନାହିଁ । ଏହା ଫଳରେ ଯୋଜନା ନାମରେ ଏପରି ଅପବ୍ୟୟ ଓ ଅର୍ଥ ଆତ୍ମସାତ୍ ସାଙ୍ଗକୁ ଛଳନାର ଶାସନ ଚାଲିଲା ଯେ ଆଜି ପର୍ଯ୍ୟନ୍ତ ଦରିଦ୍ରତା ନିବାରଣ, ସମନ୍ୱୟ, ଗ୍ରାମଯୋଜନା ଇତ୍ୟାଦି ନାମରେ ଯେତେ ଯୋଜନା ଚାଲିଛି, ସବୁ ସେହି ବ୍ଲକ୍ ଶାସନ ସଦୃଶ । ଅଜସ୍ର ଅର୍ଥବ୍ୟୟ ସାଙ୍ଗକୁ ଅର୍ଥ ଲୋକଙ୍କ ହାତକୁ ନ ଯାଇ ବାଟରେ ଏକ ନୂତନ ମଧ୍ୟବିତ୍ତ ଶ୍ରେଣୀ ସୃଷ୍ଟି କରିବାରେ ଲାଗିଲା । ଏ ପଦ୍ଧତିକୁ ବଦଳାଇବା ପାଇଁ ଦୃଢ଼ ପଦକ୍ଷେପ ନେଇ ଜବାହରଲାଲଙ୍କଠାରେ ଅପ୍ରିୟ ହେବାକୁ ହେଲା । ପ୍ରଥମ ପଦକ୍ଷେପ

ହେଲ ଓଡ଼ିଶା ହୋମ୍ ମିନିଷ୍ଟରଙ୍କ ସଭାପତିତ୍ୱରେ ଏକ କମିଟି ଗଠନ ଏବଂ ପାଞ୍ଚ ବର୍ଷରେ ବ୍ଲକ୍ କାର୍ଯ୍ୟର ସମୀକ୍ଷା । ହୋମ୍ ମିନିଷ୍ଟର ଥିଲେ ହାଇକୋର୍ଟର ପୂର୍ବତନ ଚିଫ୍‌ଜଷ୍ଟିସ୍ । ଏଣୁ ଅଫିସର ମହଲରେ ଆପତ୍ତି ଅଭିଯୋଗ କିଛି ହେବ ନାହିଁ । ଏତଦ୍‌ବ୍ୟତୀତ ବ୍ଲକ୍ ପରିଚାଳନାକୁ ନିମ୍ନତମ ଶାସନାଧୀନ କରିହେଲା । ଅର୍ଥାତ୍ ବି. ଡ଼ି. ଓ., ସବ୍‌ଡ଼ିଭିଜନାଲ ଅଫିସର ଓ ଜିଲ୍ଲା କଲେକ୍ଟରଙ୍କ ଅଧୀନ ଏବଂ ସେମାନେ ସବୁ ରିପୋର୍ଟ ପଠାଇବେ ବିଭାଗୀୟ ଅଧ୍ୟକ୍ଷଙ୍କ ମାଧ୍ୟମରେ ସେକ୍ରେଟାରିଏଟ୍‌କୁ । ଏସ୍. କେ. ଦେ ଏହାର ଘୋର ଆପତ୍ତି କରିଥିଲେ ଜବାହରଲାଲଙ୍କଠାରେ । କିନ୍ତୁ ତାଙ୍କୁ ସବୁ ବୁଝାଇ କହିବାରୁ ସେ ଅନିଚ୍ଛା ସତ୍ତ୍ୱେ ରାଜି ହେଲେ, ଏବଂ ପରୀକ୍ଷା ସ୍ୱରୂପ ମୋ ମତ ଗ୍ରହଣ କଲେ ।

ଆଜିକାଲି ବିଶ୍ୱବିଦ୍ୟାଳୟମାନଙ୍କରେ ବହୁ ବିଷୟରେ ଗବେଷଣା କରିହେଉଛି । ଗ୍ରାମଗୋଷ୍ଠୀ ଯୋଜନାର ଗବେଷଣା କଲେ ଜଣାଯିବ, କିପରି ପ୍ରଚୁର ଅର୍ଥବ୍ୟୟ କରାଯାଇ ଜନତାର ନୈତିକ ମେରୁଦଣ୍ଡକୁ ଭାଙ୍ଗି ଦିଆଯାଇପାରିବ । ସେ ଗବେଷଣା ଆଜିର ଗ୍ରାମମଙ୍ଗଳ ଯୋଜନାରେ ମଧ୍ୟ ସାହାଯ୍ୟ କରିବ । ଲିଙ୍ଗରାଜ ପ୍ରାଣିଗ୍ରାହୀଙ୍କ ରିପୋର୍ଟ ମଧ୍ୟ ଅଧ୍ୟୟନ କରିବା ଉଚିତ୍ । ଦେଶର ସର୍ବାଙ୍ଗୀନ ଉନ୍ନତି ଅଳ୍ପ ସମୟ ମଧ୍ୟରେ ସାଧନ କରିବାର ଉଚ୍ଚାଭିଳାଷ କିପରି ଯୋଜନାକୁ ବ୍ୟର୍ଥ କରାଏ ଏବଂ ପରିଣାମରେ ଜନତାର ନୈତିକ ମେରୁଦଣ୍ଡ ଆଘାତପ୍ରାପ୍ତ ହୁଏ, ତାହା ଜାଣିବା ପାଇଁ ସେ ସମୟର ଗ୍ରାମଗୋଷ୍ଠୀ ଯୋଜନାର ମୋଟାମୋଟି ରୂପରେଖ ଉଲ୍ଲେଖ କରୁଛି । ପ୍ରତ୍ୟେକ ବ୍ଲକ୍‌ରେ ପ୍ରାଥମିକ ଚିକିତ୍ସାକେନ୍ଦ୍ରଟିଏ ଖୋଲିବ ଏବଂ ଏଥିରେ ଯୋଗ୍ୟତାସମ୍ପନ୍ନ ଡାକ୍ତର, କମ୍ପାଉଣ୍ଡର, ନର୍ସ ପ୍ରଭୃତି ରହିବେ । ଛଅଜଣ ରୋଗୀଙ୍କ ପାଇଁ ଶଯ୍ୟାର ବ୍ୟବସ୍ଥା ହେବ । ଏ କେନ୍ଦ୍ରର ଛଅଟି ଶାଖା ରହିବ । ପାଳି କରି ଡାକ୍ତର ସପ୍ତାହରେ ଥରେ ପ୍ରତ୍ୟେକ ଶାଖା ପାଇଁ ସମୟ ଦେବେ । ଏହି ଯୋଜନାଟି ଶେଷରେ ସରକାରଙ୍କ ଦ୍ୱାରା

ପରିଚାଳିତ ହୋଇ ରହିଲା । କିନ୍ତୁ ଶାଖାକେନ୍ଦ୍ରମାନ ଉଠିଗଲା । ପ୍ରତ୍ୟେକ ଗ୍ରାମରେ ପାନୀୟ ଜଳଯୋଗାଣ ପାଇଁ ଟିଉବୱେଲ୍, ପୁରାତନ ପୁଷ୍କରିଣୀର ପଙ୍କୋଦ୍ଧାର ଏବଂ ନୂତନ ପୁଷ୍କରିଣୀ ଖନନ । ଏ ଯୋଜନାରେ ଏପରି ଭ୍ରଷ୍ଟାଚାର ହେଲା ଯେ ନଳକୂପ ଓ ପୋଖରୀର ଚିହ୍ନବର୍ଣ୍ଣ ଶେଷରେ ରହିଲା ନାହିଁ । ବ୍ଲକ୍ କେନ୍ଦ୍ରରେ କ୍ଲବ୍ ହାଉସ ବା ବିନୋଦନ କେନ୍ଦ୍ରମାନ ଗଠିତ ହେଲା । ଏହାର ଚିହ୍ନବର୍ଣ୍ଣ ନାହିଁ । ଶିକ୍ଷାନୁଷ୍ଠାନମାନଙ୍କର ଘର ମରାମତି, ଶିଶୁମାନଙ୍କର ଅନୁଷ୍ଠାନ, ନାରୀମାନଙ୍କ ଅନୁଷ୍ଠାନ, ଗ୍ରାମରେ ବଢ଼େଇ କମାର ପ୍ରଭୃତିଙ୍କୁ ଗ୍ରାମୋଦ୍ୟୋଗ ପାଇଁ ସାହାଯ୍ୟ, କୃଷିର ଉନ୍ନତି ପାଇଁ ବ୍ଲକ୍‌ରେ କୃଷିବିଭାଗର ଅଫିସର, ପ୍ରାଥମିକ ବିଦ୍ୟାଳୟ ପରିଚାଳନା ପ୍ରଭୃତି ଗ୍ରାମର ସର୍ବବିଧ ଉନ୍ନତି ହେଲା କାର୍ଯ୍ୟକ୍ରମ । ପରିଚାଳନାର ବ୍ୟବସ୍ଥା ହେଲା । ପ୍ରତ୍ୟେକ ବ୍ଲକ୍‌ରେ ବ୍ଲକ୍ ଡେଭଲପ୍‌ମେଣ୍ଟ ଅଫିସର ଓ କିରାଣି, ପ୍ରତ୍ୟେକ ଗ୍ରାମରେ ଗ୍ରାମସେବକ, ସମାଜ ମଙ୍ଗଳ କାର୍ଯ୍ୟ ପାଇଁ ଯୋଗ୍ୟତା-ସମ୍ପନ୍ନ ମହିଳା ଏସ୍. ଇ. ଓ. ନିଯୁକ୍ତ ଏବଂ ପରିଦର୍ଶନର ସୁବିଧା ପାଇଁ ପ୍ରତ୍ୟେକ ବ୍ଲକ୍‌କୁ ଗୋଟିଏ ଲେଖାଏଁ ଜିପ୍ । ଅଥଚ ପୋଲିସ୍ ଥାନା ବା ଶିକ୍ଷାବିଭାଗ ଅଫିସରମାନଙ୍କ ପାଇଁ ଜିପ୍ ନ ଥିଲା । ଗ୍ରାମସେବକମାନଙ୍କ ଦରମା ପ୍ରାଥମିକ ସ୍କୁଲ୍ ଶିକ୍ଷକଙ୍କ ଦରମା ଠାରୁ ବେଶୀ ଥିଲା । ବ୍ଲକ୍ ଡେଭଲପମେଣ୍ଟ ଅଫିସର ଜଣେ ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟ୍ । ଏହି ବ୍ୟବସ୍ଥାରେ ଶାସନର ସର୍ବନିମ୍ନ ସ୍ତରରେ ବ୍ଲକ୍ ହୋଇଥିଲା ସର୍ବଶ୍ରେଷ୍ଠ । ଅର୍ଥ ମିଳୁଥିଲା ଯୋଜନାରୁ । ଆଶା କରାଯାଉଥିଲା, ଶେଷରେ ଗ୍ରାମବାସୀ-ମାନେ ଖର୍ଚ୍ଚ ବହନ କରିବେ । ଏହି ଯୋଜନାର "ଲୋକେ" ଶବ୍ଦଟି ଏପରି ବ୍ୟବହୃତ ହେଲା, ପ୍ରଶାସକ ଏ ଶବ୍ଦଟିକୁ ଏପରି ଗ୍ରହଣ କରିନେଲେ ଯେ ଏହାର ଆଇନଗତ ଅର୍ଥ କିଛି ରହିଲା ନାହିଁ । ଉଦାହରଣ ସ୍ୱରୂପ ବ୍ଲକ ଅଫିସ ଓ ଅନ୍ୟ ଘର ତିଆରି ପାଇଁ "ଲୋକେ" ଜମି ଦେଲେ । ଦାତା ଓ ଗ୍ରହୀତାଙ୍କ ମଧ୍ୟରେ କୌଣସି ଲେଖାପଢ଼ା ନ ଥିଲା । ଶେଷରେ 'ଲୋକେ' ଘର ସବୁ ଦଖଲ କରିନେଲେ । କୂଅ ପୋଖରୀ ସବୁ ଯାଇ "ଲୋକ"ଙ୍କ ଜାଗା ଉପରେ ହେଲା । ପବ୍ଲିକ୍ ବା 'ଲୋକେ' ରହିଗଲେ ପ୍ରଚଳିତ ଆଇନ୍‌ର ବାହାରେ । ଏହାର ପରିଣତି ଯାହା ହେବାର କଥା, ତାହା ହିଁ ହେଲା । ଆରମ୍ଭ ହୋଇଥିବା ଅନୁଷ୍ଠାନମାନଙ୍କୁ ଲୋକେ ଚଳାଇଲେ

ନାହିଁ । ସବୁଠାରୁ ବେଶୀ ମାରାତ୍ମକ ହେଲା—ଲୋକଙ୍କର ଧାରଣା ହେଲା ଯୋଜନା ପାଇଁ ଆମେରିକା ଟଙ୍କା ଦେଉଛି । ପରିଦର୍ଶକମାନଙ୍କ ମଧ୍ୟରୁ କେତେକ ଆମେରିକାନ୍ ଥିବାରୁ ଏ ବିଶ୍ୱାସ ଦୃଢ଼ ହେଲା । ତେଣୁ ଆମେରିକାର ଅର୍ଥ ଆତ୍ମସାତ୍ କଲେ ଦୋଷାବହ ନୁହେଁ, ଏହା ହେଲା ଧାରଣା ।

କେନ୍ଦ୍ରରେ ମନ୍ତ୍ରୀ ଥିଲାବେଳେ ଆମେରିକାର ସାହାଯ୍ୟରେ ଗ୍ରାମଗୋଷ୍ଠୀ ଯୋଜନା ଫଳରେ ଜନତାର ନୈତିକ କ୍ଷତି ଘଟୁଛି ବୋଲି ଜବାହରଲାଲଙ୍କୁ ଜଣାଇଥିଲି । କିନ୍ତୁ ଜବାହରଲାଲ ଭାରତର ଗ୍ରାମଗୁଡ଼ିକୁ ଛୋଟ ଛୋଟ ସହରରେ ପରିଣତ କରିବାର ସ୍ୱପ୍ନରେ ପାଗଳ-ପ୍ରାୟ ଥିଲେ । ପ୍ରସଙ୍ଗକ୍ରମେ ଆମେରିକାର ପରିଦର୍ଶକମାନେ ଗ୍ରାମଗୋଷ୍ଠୀ ଯୋଜନାକୁ କିପରି ହାସ୍ୟାସ୍ପଦ କରିଦେଲେ, ତା'ର କେତୋଟି ଉଦାହରଣ ଦେଉଛି । ଫୋର୍ଡ ଫାଉଣ୍ଡେସନ୍ ପକ୍ଷରୁ ଜଣେ କେନ୍ଦ୍ରାପଡ଼ା ବ୍ଲକ୍‌ର ପରିଦର୍ଶନ କରି ମନ୍ତବ୍ୟ ପ୍ରକାଶ କଲେ ଯେ ଗ୍ରାମାଞ୍ଚଳର ମଳମୂତ୍ର ତ୍ୟାଗର ବ୍ୟବସ୍ଥା ନ କଲେ ଗ୍ରାମ୍ୟ ସ୍ୱାସ୍ଥ୍ୟରକ୍ଷା ସମ୍ଭବ ନୁହେଁ । ଏଣୁ କାର୍ଯ୍ୟକ୍ରମ ହେଲା ବ୍ଲକ୍‌ରେ ସେପ୍‌ଟିକ୍ ଲେଟ୍ରିନ କରିବା । ଏଥିରେ ଏପରି ଉତ୍ସାହ ପ୍ରକାଶ ପାଇଥିଲା ଯେ ମୁଁ ମୁଖ୍ୟମନ୍ତ୍ରୀ ହୋଇ ଆସିଲା ପରେ ଡଫ୍ ସେକ୍ରେଟାରୀ ଶିବରାମନଙ୍କୁ ନେଇ ଭଦ୍ରକ ନିକଟରେ ଥିବା ଏକ ବ୍ଲକ୍ ପରିଦର୍ଶନରେ ଗଲି । ଆମେ ଦେଖିଲୁ ଯେ ସେପ୍‌ଟିକ୍ ପାଇଖାନାରେ ଧାନ ଜମା କରାହୋଇଛି । ସେଠୁ ଆସିବା ପରେ ଗ୍ରାମଗୋଷ୍ଠୀ ଯୋଜନାରୁ ଏ କାର୍ଯ୍ୟକ୍ରମଟିକୁ ବାଦ୍ ଦିଆଗଲା । ପୁଣି ଗ୍ରାମରେ ଘରପୋଡ଼ିବେଳେ ସାହାଯ୍ୟ କରିବା ପାଇଁ ପକ୍କା କୁଣ୍ଡ ସବୁ ନିର୍ମିତ ହେଲା । ଗ୍ରାମବାସୀମାନେ ଏଥିରେ ପାଣି ଭର୍ତ୍ତି କରି ରଖିବେ—ଘରପୋଡ଼ିବେଳେ କାମରେ ଆସିବ । ପୋଖରୀଟିଏ ନ କରି ପାଣିକୁଣ୍ଡ ନିର୍ମାଣ ଯେ ହାସ୍ୟାସ୍ପଦ, ଏହା ଦେଖାଇବାକୁ ହେଲା । ବହୁ ଗ୍ରାମର ପାଣିକୁଣ୍ଡ ସବୁ ଆବର୍ଜନାରେ ପୂର୍ଣ୍ଣ । କାରଣ, ଜଳ ନିଷ୍କାସନର ବ୍ୟବସ୍ଥା ନାହିଁ । ବ୍ଲକ୍‌ରେ ପାଣି ଯୋଗାଇବା ପାଇଁ ତତ୍ପରତା, ଟାଙ୍କି ନିର୍ମାଣ ଓ ସେଥିଭିତରେ ପାଣି ଉଠାଇବା ପାଇଁ ଟିଉବ୍‌ୱେଲରେ ହାତପମ୍ପର ବ୍ୟବସ୍ଥା—ଏ ମଧ୍ୟ ଏପରି ହାସ୍ୟାସ୍ପଦ ଯେ ଏହା ମଧ୍ୟ ବ୍ଲକ୍-ଉତ୍ସାହୀ ଅଫିସରମାନଙ୍କ

ଦାୟିତ୍ୱରେ ରହିଲା । ଏହିପରି ଗ୍ରାମଗୋଷ୍ଠୀ ଯୋଜନାର ବହୁ କାର୍ଯ୍ୟକୁ ବାତିଲ୍ କରି ବ୍ଲକ୍‌ମାନଙ୍କୁ ଜିଲ୍ଲା ଶାସନାଧୀନ କରାଯିବାରୁ ଗ୍ରାମଗୋଷ୍ଠୀ ଯୋଜନାର ରୂପରେଖ ବଦଳିଯାଇଛି । ଜବାହରଲାଲଙ୍କୁ କୁହାଗଲା ଯେ, ମନ୍ତ୍ରୀ ଏସ୍. କେ. ଦେ ସିଧାସଳଖ ଚିଫ୍ ସେକ୍ରେଟାରୀଙ୍କ ସହ କାରବାର ନ କରି ମୁଖ୍ୟମନ୍ତ୍ରୀଙ୍କ ସହ କାରବାର କରିବାକୁ ଆଦେଶ ଦିଆଯାଉ । ଏଥିରେ ସେ ଆହୁରି ଉତ୍କ୍ଷିପ୍ତ ହେଲେ । ଏ ସମ୍ପର୍କରେ ଜବାହରଲାଲଜୀ ମୋତେ ଏ କଥା ଲେଖି ଗ୍ରାମଗୋଷ୍ଠୀ ଯୋଜନାକୁ ଅକ୍ଷୁର୍ଣ୍ଣ ରଖିବା ପାଇଁ ପରାମର୍ଶ ଦେଲେ । ମୁଁ ଏହାର ଉତ୍ତରରେ ଏକ ଦୀର୍ଘପତ୍ର ଲେଖି ଦର୍ଶାଇଥିଲି, ଗ୍ରାମଗୋଷ୍ଠୀ ଯୋଜନା କପଟ ଏକ ପ୍ରବଞ୍ଚନା । ଏହାକୁ ଚଳାଇବାକୁ ହେଲେ ମୁଁ ଇସ୍ତଫା ଦେବି । ଯାହାହେଉ, ଜବାହରଲାଲ ନେହେରୁ ବିଷୟଟି ବୁଝିଲେ । କୋରାପୁଟ ଗ୍ରାମଦାନ ସମିତିଙ୍କୁ ଗୋଟିଏ ବ୍ଲକ୍‌ର ଭାର ଦିଆହୋଇଥିଲା । ସେଠାରେ ଅର୍ଥ ତୋଷରପାତ ହେବାରୁ ସହସ୍ରବୁଦ୍ଧେ ଅନଶନ କରିଥିଲେ । ଏ ସମ୍ପର୍କରେ ସରକାରଙ୍କୁ କୈଫିୟତ ଦେବାକୁ ହେବ । ଶାନ୍ତନୁ କୁମାର ଦାସ ଏହି ବିଭାଗର ମନ୍ତ୍ରୀ ଥିଲେ । ତାଙ୍କୁ ଏବଂ ସେକ୍ରେଟାରୀଙ୍କୁ କହି କୌଣସି ପ୍ରକାରେ ହିସାବ ଠିକ୍ କରି ସରକାରଙ୍କୁ ଦେବାର ଆଦେଶ ଦେଲି । ଏହି କ୍ଷେତ୍ରରେ ଜାଣିଶୁଣି ଭ୍ରଷ୍ଟାଚାରକୁ ଲୁଚାଇବାରେ ମୁଁ ମଧ୍ୟ ସାହାଯ୍ୟ କରିଛି । ଶାସନରୁ ବିଚ୍ଛିନ୍ନ ହେବା ଫଳରେ ଭୂଦାନ ଗ୍ରାମଦାନ ଯୋଜନାରେ ନେତାମାନଙ୍କର ମଧ୍ୟ ଉତ୍ସାହ କମିଗଲା । ଜୟପ୍ରକାଶ ଓ ନବବାବୁ ପ୍ରମୁଖ ଧୀରେ ଧୀରେ ଅପସରି ଗଲେ । ରହିଲା କେବଳ ଭୂଦାନ ସମିତି । ଏହା ଆଇନ୍ ଦ୍ୱାରା ଗଠିତ ଏକ ଅନୁଷ୍ଠାନ । ଏହା ଆଜିପର୍ଯ୍ୟନ୍ତ ମଧ୍ୟ ଚାଲିଛି । କିନ୍ତୁ ଏହାର କାର୍ଯ୍ୟକୁ ସମୀକ୍ଷା କରାଯାଉନାହିଁ । କେବଳ ବିନୋବାଜୀଙ୍କ ପ୍ରତି ଭକ୍ତି ହେତୁ ଏଥିରେ ହସ୍ତକ୍ଷେପ କରି ନ ଥିଲି ।

ଭି. ପି. ମେନନ୍ ରାଜ୍ୟପାଳ ହୋଇ ଆସିଲା ପରେ ସେ ତାଙ୍କ ମତାନୁସାରେ ଶାସନର ପରିବର୍ତ୍ତନ ଘଟାଇଲେ । ସେ ଜଣେ ଦକ୍ଷ ଶାସକ ଓ ଅଫିସର । ତାଙ୍କ ମତରେ ଶାସନଟି ପୂରାପୂରି ଅଫିସରମାନଙ୍କ ହାତରେ ରହିବା ଉଚିତ ଓ ମନ୍ତ୍ରୀମାନଙ୍କର କାର୍ଯ୍ୟ ହେବ କେବଳ ରାଜନୈତିକ




ଭୁବନେଶ୍ୱର ରେଳଷ୍ଟେସନରେ ବର୍ମାର ରାଷ୍ଟ୍ରପତି ୟୁନୁଙ୍କ ସହିତ
ପଣ୍ଡିତ ନେହେରୁ ଓ ଡକ୍ଟର ମହତାବ୍‌।



ଭୁବନେଶ୍ୱର ବିମାନଘାଟିରେ ସ୍ୱାଗତ ସମ୍ବର୍ଦ୍ଧନା

ମାତ୍ର ନିର୍ଦ୍ଧାରଣ । ଏହି ଅନୁସାରେ ଅଞ୍ଚଳ ଶାସନ ଆଇନ୍ ନାମରେ ଏକ ବିରାଟ ଆଇନ୍ ପ୍ରଣୀତ ହେଲା । ତଦନୁସାରେ ଓଡ଼ିଶାର ତିନୋଟି ଡିଭିଜନରେ ଜଣେ ଜଣେ ରେଭିନ୍ୟୁବୋର୍ଡ଼ ମେମ୍ବର ରହିବେ । ସେମାନଙ୍କ ଅଧୀନରେ ଅଞ୍ଚଳ ଅଧିକାରୀମାନେ କାର୍ଯ୍ୟ କରିବେ । ଏଥିରେ ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ସବ୍‌ଡିଭିଜନାଲ ଅଫିସର ପ୍ରଭୃତିଙ୍କ ସ୍ଥାନ ଗୌଣ ହେଲା । ଜମିଦାରୀ ଉଚ୍ଛେଦ ପରବର୍ତ୍ତୀ ନୂତନ ପରିସ୍ଥିତିରେ ରାଜସ୍ୱ-ବିଭାଗର କର୍ତ୍ତବ୍ୟ କିଛି ରହିଲା ନାହିଁ । ଏପରିକି ଜମିଦାରମାନଙ୍କୁ କ୍ଷତିପୂରଣ ଦେବା ବିଷୟଟି ଶାସନ ଭୁଲିଗଲା । ଏପରି ହେଲା ଯେ ହୀରାକୁଦ ହିସାବ ଓଡ଼ିଶା ହିସାବକୁ ଆସି ରାଜ୍ୟସରକାରଙ୍କ ହିସାବ ହେବା କଥା । କିନ୍ତୁ ହୀରାକୁଦ ହିସାବକୁ ପ୍ରଥମ ପର୍ଯ୍ୟାୟରେ ନ ମିଶାଇବାରୁ ଓଡ଼ିଶାର ବଜେଟ ଏପରି ନିଅଣ୍ଟିଆ ହେଲା ଯେ ରାଜ୍ୟପାଳ ସବୁ ବିଭାଗର ଖର୍ଚ୍ଚକୁ କାଟକୁଟ କରିଦେଲେ । ଏହା ଯେ ହିସାବଗତ ବିଭ୍ରାଟ, ତାହା କେନ୍ଦ୍ର ସରକାର ଜାଣିପାରି ଭି. ପି. ମେନନ୍‌ଙ୍କୁ ଅପସାରଣ କରିନେଲେ ।

ମୁଁ ଆସିବା ପରେ ଅଞ୍ଚଳ ଶାସନ ପରିବର୍ତ୍ତେ ପୂର୍ବ ଧରଣରେ ଶାସନ ପୁନଃ ପ୍ରବର୍ତ୍ତିତ ହେଲା । ଡିଭିଜନାଲ କମିଶନରଙ୍କ ଅଧୀନରେ କଲେକ୍ଟରମାନେ ରାଜସ୍ୱବିଭାଗର ସମସ୍ତ କାର୍ଯ୍ୟ ବୁଝିବେ ଏବଂ ପୂର୍ବ ପରି ମନ୍ତ୍ରୀଙ୍କ ଅଧୀନସ୍ଥ ହୋଇ ସେକ୍ରେଟାରିଏଟ୍ କାର୍ଯ୍ୟ କରିବ । ଜମିଦାରୀ ଉଚ୍ଛେଦ ପରେ ଜମିଦାରଙ୍କୁ କ୍ଷତିପୂରଣ ଦେବାକୁ ହେବ । ଏହା ଶାସନର କର୍ତ୍ତବ୍ୟ ନୁହେଁ ବୋଲି ମନେ କରାଯାଉଥିଲା । ଏହା ଫଳରେ ଗ୍ରାମାଞ୍ଚଳର ଆର୍ଥିକ ଅବସ୍ଥା ଉତ୍କଟ ହେଲା । କାରଣ ଗ୍ରାମ୍ୟ ଆର୍ଥିକସ୍ଥିତି ଜମିଦାରଙ୍କୁ ନେଇ ଚାଲୁଥିଲା । ଜମିଦାର କହିଲେ ଯେ ବଡ଼ ବଡ଼ ଜମିଦାର, ତାହା ନୁହେଁ, ଅସଂଖ୍ୟ ଛୋଟ ଛୋଟ ଜମିଦାରଙ୍କୁ କେନ୍ଦ୍ର କରି ଗ୍ରାମ୍ୟ ଅର୍ଥନୀତି । ଯଥାଶୀଘ୍ର କ୍ଷତିପୂରଣ ଦେଇଦେବା ପାଇଁ ଏକ କମିଟି ଗଠନ କଲି । ରେଭିନ୍ୟୁବୋର୍ଡ଼ ମେମ୍ବର, ରାୟବାହାଦୁର ଲୋକନାଥ ମିଶ୍ର ଓ ଗଞ୍ଜାମର ସେରଗଡ଼ ରାଜା ଏଥିରେ ମେମ୍ବର ରହିଲେ । ଏମାନେ ନିୟମିତ ବସି ଛୋଟ ବଡ଼ ସବୁ କ୍ଷତିପୂରଣ ଦେଇଦେବାର ବ୍ୟବସ୍ଥା ହେଲା । ଏହା ଫଳରେ ଗ୍ରାମାଞ୍ଚଳରୁ ହତାଶ ଭାବର ଅବସାନ ଘଟିଲା । ପ୍ରଜାମାନଙ୍କର ସମୂହ ସ୍ୱାର୍ଥରକ୍ଷା ପାଇଁ ତହସିଲଦାରମାନଙ୍କୁ ତାଗିଦ୍ କରାହେଲା ।

ତତ୍କାଳୀନ ରାଜନୈତିକ ଜଟିଳତାକୁ ସମ୍ଭାଳିବା ଲାଗି; ସ୍ୱାଧୀନ ସଭ୍ୟମାନଙ୍କ ପ୍ରତ୍ୟକ୍ଷ ସମର୍ଥନ ଓ କମ୍ୟୁନିଷ୍ଟ ସଭ୍ୟମାନଙ୍କ ପରୋକ୍ଷ ସମର୍ଥନ ଲାଭ କରିବା ପାଇଁ ସବୁପ୍ରକାର ପନ୍ଥାର ଆଶ୍ରୟ ନେବାକୁ ହୋଇଥିଲା । ଏହାକୁ ସୁଚାରୁ ରୂପେ ଚଳାଇଥିଲେ ବଜ୍ର ପଟ୍ଟନାୟକ ଓ ବୀରେନ୍ ମିତ୍ର । ଏଥିରେ ମୋର ମଧ୍ୟ ଦାୟିତ୍ୱ ଥିଲା—ଏହା ଜଣାଇ ଦେବାକୁ ଚାହେଁ । ତା' ନ ହେଲେ ସବୁ ନିନ୍ଦା ଉକ୍ତ ଦୁଇ ଉତ୍ସାହୀ ସମର୍ଥକଙ୍କ ମୁଣ୍ଡ ଉପରେ ଚାଲିଯିବ । ଗଣତନ୍ତ୍ର ପରିଷଦର ଅନଶନ ଚାଲିଥାଏ ମନ୍ତ୍ରିମଣ୍ଡଳର ପତନ ପାଇଁ । କିନ୍ତୁ ଏହା ହୋଇପାରୁ ନ ଥାଏ ବଜ୍ର ପଟ୍ଟନାୟକ ଓ ବୀରେନ୍ ମିତ୍ରଙ୍କ ଅଦମ୍ୟ ଚେଷ୍ଟା ଯୋଗୁଁ । ଶେଷରେ ସେମାନଙ୍କର ରାଗ ହେଲା ବଜ୍ର ପଟ୍ଟନାୟକଙ୍କ ଉପରେ । ସେମାନେ ତାଙ୍କୁ ସନ୍ଧ୍ୟାବେଳେ ଅନୁପ ସିଂ ଦେଓଙ୍କ କ୍ୱାର୍ଟରକୁ ନିମନ୍ତ୍ରଣ କରି ସେଠାରେ ମାଡ଼ ଦେଲେ ଓ ତାଙ୍କ ଲୁଗାପଟା ଚିରି ପକାଇଲେ । ଏ ଗୁରୁତର ଘଟଣାରେ ହୋମ୍ ମିନିଷ୍ଟର ଲିଙ୍ଗରାଜ ପାଣିଗ୍ରାହୀ ଦୃଢ଼ ପଦକ୍ଷେପ ନେଲେ । ଅନୁପ ସିଂହଦେଓ, ଉଦିତ ଦେଓ ଏବଂ ପ୍ରତାପ କେଶରୀ ଦେଓଙ୍କୁ ଆରେଷ୍ଟ କରି ସଙ୍ଗେ ସଙ୍ଗେ ଖୋର୍ଦ୍ଧା ସବ୍‌ଜେଲକୁ ପଠାଇ ଦିଆଗଲା । ସେତେବେଳେ ପର୍ଯ୍ୟନ୍ତ ଭୁବନେଶ୍ୱର, ଖୋର୍ଦ୍ଧା ସବ୍‌ଡିଭିଜନ୍ ଅନ୍ତର୍ଗତ ଥିଲା । ଅବଶ୍ୟ କିଛିଦିନ ପରେ ସେମାନଙ୍କୁ ମୁକ୍ତ କରାହେଲା ।

ରାଜାମାନଙ୍କୁ ଜେଲ୍ ଦେବାର ପ୍ରଭାବ ଲୋକେ ଅନୁଭବ କଲେ । ରାଜନୈତିକ ଅସ୍ଥିରତା ଶାସନ ଉପରେ ଆଉ ଆସୁ ନ ଥାଏ । କାରଣ ଶାସନ ଦୃଢ଼ ଭାବରେ ଚାଲୁ—ଏହା ହିଁ ଥିଲା ମୋର ସମସ୍ତ ଉଦ୍ୟମ । ଖ୍ରୀ: ୧୯୫୭ ଅପ୍ରେଲ ୭ ତାରିଖରୁ ଖ୍ରୀ: ୧୯୫୯ ମେ ୨୨ ତାରିଖ ପର୍ଯ୍ୟନ୍ତ ରାଜନୈତିକ ଅସ୍ଥିରତା ଥିଲେ ମଧ୍ୟ ଶାସନ କ୍ଷେତ୍ରରେ ଯେଉଁ ବିକାଶ ସାଧିତ ହୋଇଥିଲା, ତାହା ଉଲ୍ଲେଖଯୋଗ୍ୟ । ଏହା ଦର୍ଶାଇବା ଦରକାର, କାରଣ ରାଜନୀତି କ୍ଷେତ୍ରରୁ ଶାସନକୁ ପୃଥକ୍ ରଖିହେବ—ଏହା ହିଁ ମୋର ଅଭିଜ୍ଞତା । ନିମ୍ନଲିଖିତ କାର୍ଯ୍ୟମାନ ଉଲ୍ଲେଖଯୋଗ୍ୟ

(୧) ଭୁବନେଶ୍ୱର ଏକ ସ୍ୱୟଂ-ସ୍ୱତନ୍ତ୍ର ସବ୍‌ଡିଭିଜନ ହେଲା ।

(୨) ଭୁବନେଶ୍ୱରରେ ପ୍ରଥମଶ୍ରେଣୀ ସରକାରୀ କଲେଜ ସ୍ଥାପିତ ହେଲା ।

(୩) ଭୁବନେଶ୍ୱର ରାଜଧାନୀ ହୋଇଥିଲେ ମଧ୍ୟ ଏହାକୁ ପ୍ରବର୍ତ୍ତନ ମନ୍ତ୍ରିମଣ୍ଡଳ ଗୁରୁତ୍ୱ ନ ଦେଉଥିବା ଫଳରେ ବହୁ ବିଭାଗ, ବିଶେଷତଃ ଫାଇନାନ୍‌ସ ଡିପାର୍ଟମେଣ୍ଟ କଟକରେ ଥିଲା । ଭୁବନେଶ୍ୱରରେ କ୍ୱାର୍ଟର ଓ ଅଫିସ୍ ପାଇଁ ଯଥେଷ୍ଟ ସୁବିଧା ନ ଥିଲେ ମଧ୍ୟ ସବୁ ବିଭାଗକୁ ଭୁବନେଶ୍ୱର ଅଣାହେଲା । ଯଥେଷ୍ଟ ସଂଖ୍ୟାରେ କ୍ୱାର୍ଟର ନ ଥିବାରୁ କଟକରୁ ଭୁବନେଶ୍ୱର ଯା' ଆସ ପାଇଁ କର୍ମଚାରୀମାନଙ୍କୁ ରେଳଭଡ଼ା ଦିଆହେଲା । ଟ୍ରେନ୍ ସର୍ଭିସ୍‌ର ମଧ୍ୟ ସୁବିଧା କରିଦିଆହେଲା ।

(୪) ରାଜଧାନୀ ନିର୍ମାଣ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା ଅନ୍ତର୍ଭୁକ୍ତ ହେବାରୁ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ସବୁ କାର୍ଯ୍ୟ ସମ୍ପୂର୍ଣ୍ଣ କରିବା ପାଇଁ କେରଳରୁ ଜଣେ ଅଭିଜ୍ଞ ଇଞ୍ଜିନିୟରଙ୍କୁ ଚିଫ୍‌ଇଞ୍ଜିନିୟର କରି ଅଣାଗଲା । ବିଧାନସଭା ଗୃହ ଓ ରାଜଭବନ ନିର୍ମାଣକାର୍ଯ୍ୟ ଆରମ୍ଭହେଲା । ସେକ୍ରେଟାରୀ ଏଟ୍ ନିର୍ମାଣ କାର୍ଯ୍ୟକୁ ତ୍ୱରାନ୍ୱିତ କରାହେଲା । ଏତଦ୍‌ବ୍ୟତୀତ ମ୍ୟୁଜିୟମ୍ ଭବନ ଏବଂ ତତ୍‌ସହିତ ସଂଲଗ୍ନ ତିନୋଟି ଏକାଡେମୀ—ସାହିତ୍ୟ, ସଙ୍ଗୀତନାଟକ, ଓ ଲଳିତକଳା ଏକାଡେମୀ ପାଇଁ ଗୃହ ଏବଂ ସାଂସ୍କୃତିକ ସଭା ସମିତି ପାଇଁ 'କଳାମଣ୍ଡପ' ନିର୍ମାଣ କାର୍ଯ୍ୟ ହାତକୁ ନିଆହେଲା ।* ମନ୍ତ୍ରୀମାନଙ୍କ ମଧ୍ୟରେ ଶ୍ରୀ ସତ୍ୟପ୍ରିୟ ମହାନ୍ତି ଓ ଶ୍ରୀ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ କର୍ମନିପୁଣତା ଯୋଗେ ବହୁ କାର୍ଯ୍ୟ ସୁସମାହିତ ହେଉଥିଲା । ଶ୍ରୀମତୀ ବସନ୍ତ ମଞ୍ଜରୀ ଦେବୀ ସ୍ୱାସ୍ଥ୍ୟ ବିଭାଗ କାର୍ଯ୍ୟ ସୁପରିଚାଳନା କରି ଯକ୍ଷ୍ମା ଚିକିତ୍ସା ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରାଇଥିଲେ । ଏଥିପାଇଁ ପ୍ରଥମେ କଳାହାଣ୍ଡିରେ କାର୍ଯ୍ୟ ଆରମ୍ଭ ହେଲା । ତା'ପରେ, ରଣପୁର ରାଜାଙ୍କ ବୃନ୍ଦପୁରରେ ଥିବା ଅତିଥିଭବନଟିକୁ ସେ ଦାନ କରି, ସେଠାରେ ଯକ୍ଷ୍ମା ଚିକିତ୍ସାର ସମସ୍ତ ବ୍ୟବସ୍ଥା କରିବା ପାଇଁ, ସର୍ବସାଧାରଣରୁ ଅର୍ଥ ସଂଗ୍ରହ କରି ଏକ ସ୍ୱତନ୍ତ୍ର ହସ୍‌ପିଟାଲ ସ୍ଥାପନର ଉଦ୍ୟମ କରିଥିଲେ । ଏ ପ୍ରକାର ଉଦ୍ୟମ ପୂର୍ବେ

* ମ୍ୟୁଜିୟମ ସୌଧସଂଲଗ୍ନ ଏହି 'କଳାମଣ୍ଡପ'କୁ ସମ୍ପ୍ରତି 'ଭଞ୍ଜମଣ୍ଡପ' ରୂପେ ନାମିତ କରାଯାଇଛି ।

କେହି କର ନ ଥିଲେ କି ପରେ କେହି କରନାହାନ୍ତି । ଗୃହା ସଂଗ୍ରହ କମିଟିର ସଭାପତି ମୁଁ ଥିଲି । ଏହି ହସ୍‌ପିଟାଲ 'ବସନ୍ତମଞ୍ଜରୀ ସ୍ୱାସ୍ଥ୍ୟନିବାସ' ନାମରେ ପ୍ରସିଦ୍ଧ ଏବଂ ଏହା ପରେ ସରକାରଙ୍କ ଦ୍ୱାରା ପରିଚାଳିତ ହେଲା । ମନ୍ତ୍ରୀ ହିଁଳମଣି ରାଉତରାୟ ରାଜନୈତିକ ସ୍ତରରେ ନିଜର ଦକ୍ଷତା ପ୍ରମାଣ କରିଥିଲେ । ଶିଳ୍ପପ୍ରସାର ପାଇଁ ସରକାରୀ ସାହାଯ୍ୟ, ଉଦ୍‌ଯୋଗରେ ଉଦ୍‌ଯୋଗରେ ପାଇଲଟ୍ ସ୍କିମ୍ ନାମରେ ଏକ ଯୋଜନା କରାହେଲା । ଏହାର ତତ୍ତ୍ୱାବଧାନ ଶିଳ୍ପମନ୍ତ୍ରୀ ଶ୍ରୀ ଧନବନ୍ଧୁ ସାହୁ କରୁଥିଲେ । କିନ୍ତୁ ସେ ଏହାକୁ ଏତେ ବ୍ୟକ୍ତିଗତ କରିପକାଇଲେ ଯେ, ଶେଷରେ ଏହା ବିଫଳ ହେଲା । ଶିଳ୍ପବିଭାଗର ସେକ୍ରେଟାରୀ ବରାବର ମୋ'ଠାରେ ଆପତ୍ତି କରିବାରେ ଲାଗିଲେ, କପର କୌଣସି ନିୟମକୁ ନ ମାନି ଧନବନ୍ଧୁବାବୁ କାମ କରିଯାଉଛନ୍ତି । ଶିଳ୍ପବିଭାଗରେ କ୍ରମେ ଗୁରୁତର ଅଭିଯୋଗମାନ ହେଲା । କେତେଥର ଚିଫ୍ ସେକ୍ରେଟାରୀ ଶିବରମନ୍‌ଙ୍କୁ ଆଦେଶ ଦେଇ ଶିଳ୍ପ ସମ୍ବନ୍ଧୀୟ ଆପତ୍ତି ଅଭିଯୋଗକୁ ତୁଟାଇବାକୁ ହୋଇଥିଲା । ପ୍ରଥମରୁ ଶ୍ରୀ ଧନବନ୍ଧୁ ସାହୁ ଓ ଶ୍ରୀ ରାଧାନାଥ ରଥ ନିଜକୁ ମୁଖ୍ୟମନ୍ତ୍ରୀଙ୍କ ପରିଚାଳନାଭୁକ୍ତ ହେବାକୁ ପସନ୍ଦ କରୁନଥିଲେ । ସେମାନେ ପୂର୍ବତନ ପ୍ରାଦେଶିକ କଂଗ୍ରେସ କମିଟିର ପକ୍ଷପାତୀ ଥିଲେ । ମୁଁ ଏ ଦିଗରେ ନିଜକୁ ଦେବା ପସନ୍ଦ କଲିନାହିଁ । ବିଧାନସଭାରେ ବିରୋଧୀଦଳର ନେତା ରାଜେନ୍ଦ୍ରନାରାୟଣ ସିଂହଦେଓଙ୍କ ସହିତ ସଦ୍‌ଭାବ ରଖି ଚାଲିବା ଶ୍ରେୟସ୍କର ମନେକଲି ।

ମୋ ଶାସନ ବିରୁଦ୍ଧରେ ପୂର୍ବତନ ପ୍ରାଦେଶିକ କଂଗ୍ରେସ କମିଟିର କର୍ମକର୍ତ୍ତାମାନେ କଂଗ୍ରେସ ସଭାପତି ଧେବରଙ୍କଠାକୁ ନାନା ଅଭିଯୋଗ ପଠାଉଥିଲେ । ସେସବୁର ଉତ୍ତର ମୁଁ ଦେଇଦେଉଥାଏ । ଥରେ ଶ୍ରୀ ଧେବର ନିଜେ ଆସିଥିଲେ । ସେ ସବୁ ବୁଝିଲେ ଓ ପରାମର୍ଶ ଦେଲେ, କୌଣସି ପ୍ରକାରେ ପୂର୍ବ କର୍ମକର୍ତ୍ତାମାନଙ୍କ ମନରଖି ଚଳିବା ପାଇଁ । ମୁଁ ସ୍ପଷ୍ଟ କହିଥିଲି, ବର୍ତ୍ତମାନ ବିଧାନସଭାରେ ସମସ୍ତଙ୍କ ମନ ରକ୍ଷା ନ କଲେ, ଗଭର୍ଣ୍ଣମେଣ୍ଟ ରହିବ ନାହିଁ । ଏ ଦିଗରେ ପୁରୁଣା ଲୋକେ ସାହାଯ୍ୟ କରନ୍ତୁ । ସେ ଏଥିରେ ସମ୍ମତ ହେଲେ । ଉପରୋକ୍ତ ମନ୍ତ୍ରୀ ଦୁଇଜଣ ଶେଷ ସୀମାକୁ ଚାଲିଗଲେ । କେନ୍ଦ୍ରାପଡ଼ାରେ ଏକ ରାଜନୈତିକ

ସମ୍ମିଳନୀ ଘନବନ୍ଧୁ ସାହୁ ଆୟୋଜନ କଲେ । ଏ ବିଷୟରେ ସେ ମୋତେ ପଚାରି ନ ଥିଲେ । କଂଗ୍ରେସ ନେତା ଶ୍ରୀ ଅତୁଲ୍ୟ ଘୋଷଙ୍କୁ ଏ ସମ୍ମିଳନୀର ସଭାପତି ରୂପେ ସେ ବାଛିଥିଲେ । ସେ ସମ୍ମିଳନୀକୁ ଅସୁସ୍ଥତାବଶତଃ ମୁଁ ଯାଇପାରିଲି ନାହିଁ । ଶ୍ରୀ ଅତୁଲ୍ୟ ଘୋଷ ମୋର ଅତିଥି ହୋଇଥିଲେ । ରାତି ଦଶଟାବେଳେ ସେ ଉଚ୍ଚ ସ୍ୱରରେ କହି କହି ଆସିଲେ, "ଏ ଓଡ଼ିଶା, ଏଠାରେ ସବୁ ହୋଇ ପାରେ ।" ମୁଁ ପଚାରିଲି, "କଥା କଅଣ ?" ସେ କହିଲେ, "ସଭାରେ ଦୁଇଜଣ ମନ୍ତ୍ରୀ କେବଳ ସରକାରଙ୍କ ସବୁ କାର୍ଯ୍ୟର ସମାଲୋଚନା କଲେ ଏବଂ ସଭାପତି ହିସାବରେ ସେ ନିଜେ ସମାଲୋଚନାର ଉତ୍ତର ଦେଲେ । ସଭାପତିଙ୍କୁ ଧନ୍ୟବାଦ ଦେବା ପରେ ରାଧାନାଥ ରଥ ଉଠିପଡ଼ି ସରକାରଙ୍କ ସପକ୍ଷରେ ଭାଷଣ ଆରମ୍ଭ କଲେ । ଏପରି ହାସ୍ୟାସ୍ପଦ ବ୍ୟାପାର ସେଠି ହେଲା ।" କହୁଁ କହୁଁ ଗୁଡ଼ାଏ କହିଗଲେ । ପୁଣି ଅତୁଲ୍ୟ ଘୋଷ କାଲେ ହାଇକମାଣ୍ଡଙ୍କୁ କ'ଣ ରିପୋର୍ଟ କରିଦେବେ, ଏଥିପାଇଁ ସଭା ଶେଷରେ ସେ ଗୁଡ଼ାଏ କହିଲେ । ଏ ସମ୍ପର୍କରେ ଘନବନ୍ଧୁ ସାହୁଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ପାଇଁ କୈଫିୟତ ମାଗିଥିଲି । ଅବସ୍ଥା ବୁଝି ଘନବନ୍ଧୁ ବାବୁ କ୍ଷମାପ୍ରାର୍ଥନା ମାଗି ଏକ କୈଫିୟତ ଦେଲେ । ତାହା ଗୃହୀତ ହେଲା । ସେ ସମୟରେ ଏସବୁ ଗୁରୁତ୍ୱ କଥା ନ ଥିଲା । ଏକେ ତ ବିଧାନସଭାରେ କଂଗ୍ରେସ ଦଳର ସଂଖ୍ୟା କମ୍ ଓ ସଂଖ୍ୟା ରକ୍ଷା କରିବା ପାଇଁ ବହୁ ଉଦ୍ୟମ କରାହେଉଥାଏ, ତେଣେ ମନ୍ତ୍ରୀମଣ୍ଡଳରେ ବିଭେଦ । ଏହି ରାଜନୈତିକ ସ୍ଥିତି ଯୋଗୁଁ ଦୃଢ଼ ହୋଇ କିଛି କାର୍ଯ୍ୟ କରିବାରେ ପ୍ରତିବନ୍ଧକ ସୃଷ୍ଟି ହେଲା । ମଝିରେ ଏକ ଉପନିର୍ବାଚନ ଆସିଲା । ସେଥିରେ ସବୁ ବିରୋଧୀଦଳଙ୍କ ବିରୁଦ୍ଧରେ କଂଗ୍ରେସ ଜିତିଲା । ଶାନ୍ତନୁବାବୁ ପ୍ରଭୃତିଙ୍କ ଆନ୍ତରିକ ଉଦ୍ୟମ ଯୋଗୁଁ ଏହା ସମ୍ଭବ ହେଲା । କିନ୍ତୁ ଯେପରି ରାଜନୈତିକ ସ୍ଥିତି ଥାଉ ପଛକେ, ସେଥିରେ ଗଭର୍ଣ୍ଣମେଣ୍ଟ ଆଗିଦୃଶିଆ କିଛି କରିଯାଉ—ଏହା ହେଲା ଉଦ୍ଦେଶ୍ୟ । କିନ୍ତୁ ଏହା ସମ୍ଭବ ହେଉନାହିଁ, ତାହା କ୍ରମେ ସ୍ପଷ୍ଟ ହୋଇଗଲା ।

ଖ୍ରୀ: ୧୯୫୭ ରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରି ମୁଖ୍ୟମନ୍ତ୍ରୀ ହେବାପରେ, ବିରୋଧରେ ଥିବା ସମୟରେ ଯେଉଁସବୁ କାର୍ଯ୍ୟରେ ହାତ

ଦେଇଥିଲି, ସେସବୁ କାର୍ଯ୍ୟରେ, ଓଡ଼ିଶାରେ ଥାଇ ମଧ୍ୟ, ସାହାଯ୍ୟ କରିବାକୁ ବିଦେଶୀ ବନ୍ଧୁମାନଙ୍କର ଗୃହ ପଡ଼ୁଥାଏ । ପ୍ରଖ୍ୟାତ ସମାଜ ଓ ସାହିତ୍ୟ ସେବିକା ମ୍ୟାଡାମ୍ ସୋଫିଆ ଓ୍ୱାଡ଼ିଆ ଚାହିଁଲେ ପି. ଇ. ଏନ୍. ସାହିତ୍ୟ-ସଂଘର ଏକ ଭାରତୀୟ ଅଧିବେଶନ ଓଡ଼ିଶାରେ ହେଉ । ଏହାକୁ ସ୍ୱୀକାର କରି ଭୁବନେଶ୍ୱରରେ ଅଧିବେଶନ ଆହୂତ ହେଲା । ଶତାଧିକ ପ୍ରତିଷ୍ଠିତ ସାହିତ୍ୟିକ ଯୋଗ ଦେଇଥିଲେ । ପ୍ରଧାନମନ୍ତ୍ରୀ ଜବାହରଲାଲ ଓ ପ୍ରଫେସର ହୁମାୟୁନ୍ କବିର ମଧ୍ୟ ଯୋଗ ଦେଇଥିଲେ । ଅତିଥିମାନଙ୍କ ସୁବିଧା ପାଇଁ ସମସ୍ତ ବ୍ୟବସ୍ଥା କରାଯାଇଥିଲା । ସେତେବେଳେ ରାଜଭବନ କଟକରେ । ଅଧା ସେକ୍ରେଟାରିଏଟ୍ କଟକରେ । ଭୁବନେଶ୍ୱରରେ କେବଳ ଅତିଥି-ଭବନଟି ଥାଏ । ଏ ସମ୍ପର୍କରେ ମୋର ମନକୁ ଆଘାତ ଦେଇଥିଲା କଲିକତାରେ ଏକ ସାହିତ୍ୟିକ ଅନୁଷ୍ଠାନ ପ୍ରତିଷ୍ଠା କରିଥିବା ଜଣେ ଓଡ଼ିଶା-ବାସୀଙ୍କ ମନ୍ତବ୍ୟ । ସେ ପି.ଇ.ଏନ୍.ର ସଭ୍ୟ ନ ଥିଲେ । କିନ୍ତୁ ସାହିତ୍ୟସଙ୍ଘ ସମ୍ବନ୍ଧରେ ମତପ୍ରକାଶ କରି କେତେକଙ୍କୁ କହିଲେ, ଭାରତର ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଆଧୁନିକ ସୁବିଧା, ବାସଭବନ ଯୋଗାଇ ଦିଆହୋଇ ପାରିବ ତ ? ଶ୍ରୀ ଅନ୍ନଦା ଶଙ୍କର ରାୟ ଢେଙ୍କାନାଳର ଜଣେ ପ୍ରତିଷ୍ଠିତ ପରିବାରର ବ୍ୟକ୍ତି । ସେ ରେଭେନ୍‌ସା କଲେଜରେ ଅଧ୍ୟୟନ କରିଥିଲେ । ନବକୃଷ୍ଣ ଚୌଧୁରୀ, ହରିହର ମହାପାତ୍ର ପ୍ରଭୃତିଙ୍କ ସାଙ୍ଗରେ ସେ ଓଡ଼ିଆ ସାହିତ୍ୟର ତଥାକଥିତ 'ସବୁଜ ଯୁଗ' ଆରମ୍ଭ କରିଥିଲେ । ପରେ ସେ କଲିକତା ଗଲେ । ବିଦେଶୀ ମହିଳାଙ୍କୁ ବିବାହ କଲେ । ପଚିଶ ତିରିଶ ବର୍ଷରେ ସେ ଜଣେ ବିଶିଷ୍ଟ ବଙ୍ଗ ସାହିତ୍ୟିକ ହେଲେ । ତାଙ୍କ ବିଚାରରେ ଓଡ଼ିଶା ପୂର୍ବପରି ଏକ ଅନୁନ୍ନତ ଅଞ୍ଚଳ ହୋଇ ରହିବ । ଏହା କେବଳ ତାଙ୍କର ନୁହେଁ, ଓଡ଼ିଶା ସମ୍ବନ୍ଧରେ ବହୁ କଲିକତାବାସୀ ବଙ୍ଗାଳିଙ୍କର ମଧ୍ୟ ଧାରଣା ଥିଲା । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇ ସ୍ୱାଧୀନତା ପରେ ଯେ ଭାରତର ଏକ ଶ୍ରେଷ୍ଠ ପ୍ରଦେଶ ହୋଇଯାଇଛି, ଏହା ସେମାନେ କଳ୍ପନା କରିପାରୁ ନ ଥିଲେ । ଓଡ଼ିଶା ପାଇଁ ଗର୍ବ କରୁଥିବା ବ୍ୟକ୍ତିମାନଙ୍କର ଏ ଶ୍ରେଣୀର ବ୍ୟକ୍ତିମାନଙ୍କ ପ୍ରତି ସମ୍ମାନ ଆଦୌ ନଥିଲା । ସେହି ସମୟରୁ ଅନ୍ନଦା ଶଙ୍କର ରାୟଙ୍କ ସହିତ ସମ୍ପର୍କ ରଖିବାକୁ ମନ ଗଲାନାହିଁ । ପରେ ଡକ୍ଟର କାଳିଦାସ ନାଗ ପ୍ରଭୃତି ବିଶିଷ୍ଟ ବ୍ୟକ୍ତିମାନଙ୍କର ଓଡ଼ିଶା ସମ୍ବନ୍ଧରେ,

ବିଶେଷତଃ ଓଡ଼ିଶା ସରକାର ବିଶ୍ୱଭାରତୀରେ ଓଡ଼ିଆ ବିଭାଗ ଖୋଲିବା ଏବଂ ଅନ୍ୟ କ୍ଷେତ୍ରରେ ଓଡ଼ିଶାର ସୁଖ୍ୟାତି ବୃଦ୍ଧି ପାଇବା ଫଳରେ, ଉକ୍ତ ଧାରଣା ହୋଇଥିଲା । ଅନ୍ନଦାଶଙ୍କର ରାୟଙ୍କ ପରି ସଙ୍କୀର୍ଣ୍ଣ ମନୋଭାବାପନ୍ନ କତିପୟ ବଙ୍ଗାଳିଙ୍କ ମତ ଓ ଧାରଣାର କିଛି ମୂଲ୍ୟ ରହିଲା ନାହିଁ । ଆନନ୍ଦର ବିଷୟ, ଅନ୍ନଦାଶଙ୍କର ଓଡ଼ିଆ ସାହିତ୍ୟ ସହିତ ଆଉ ସମ୍ପର୍କ ରଖି ନ ଥିଲେ ।

ଯାହାହେଉ, ପି.ଇ.ଏନ୍. ସଭାରେ ମ୍ୟାଡାମ ସୋଫିଆ, ବୁଦ୍ଧ-ଜୟନ୍ତୀ କାର୍ଯ୍ୟ ପାଇଁ ମୋର ଭୂୟସୀ ପ୍ରଶଂସା କରିଥିଲେ । ସାହିତ୍ୟିକମାନେ ଉକ୍ତ ଧାରଣା ପୋଷଣ କରି ବିଦାୟ ନେଲେ । ବମ୍ବେ ଯାଇ ବୁଦ୍ଧ-ଜୟନ୍ତୀ ମିଶନ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ମ୍ୟାଡାମ ସୋଫିଆ ମୋତେ ପତ୍ର ଓ ଟେଲିଗ୍ରାମ ଦେଉଥାନ୍ତି । କିନ୍ତୁ ମୁଁ ଯେ ଏକ ଅନିଶ୍ଚିତ ଅବସ୍ଥାରେ ଓଡ଼ିଶାରେ ଥାଏଁ, ଏହା କାହାରିକୁ ଜଣାଇବାକୁ ଦେଲି ନାହିଁ । ମୋ' ପରେ ବମ୍ବେର ରାଜ୍ୟପାଳ ହୋଇଥିଲେ ଶ୍ରୀ ଶ୍ରୀପ୍ରକାଶ । ତାଙ୍କ ପାଖକୁ ପତ୍ର ଲେଖି ସେଠା କାର୍ଯ୍ୟରେ ସାହାଯ୍ୟ କରିବାକୁ ଅନୁରୋଧ କଲି । କିନ୍ତୁ ସେ ସେଥିରେ ଆଗ୍ରହୀ ହେଲେ ନାହିଁ । ଫଳରେ ବୁଦ୍ଧଜୟନ୍ତୀ ମିଶନ ମୃତପ୍ରାୟ ହୋଇଗଲା ।

•

ଜାତୀୟ ରାଷ୍ଟ୍ରଭାଷା ସମ୍ବନ୍ଧରେ ବମ୍ବେରେ ଯେଉଁ ମତ ପ୍ରଚାର କରିଥିଲି ଏଠି ମଧ୍ୟ ତାହାକୁ ହିଁ ପୁନରାବୃତ୍ତି କରି ଲିଙ୍ଗୁଏଜ କମିଶନଙ୍କୁ ସ୍ମାରକ-ପତ୍ର ଦେଇ ଇଂରେଜୀକୁ ହିନ୍ଦୀ ସଙ୍ଗେ ରାଷ୍ଟ୍ରଭାଷା କରିବା ପାଇଁ ଯୁକ୍ତି କଲି । ମାନ୍ଦ୍ରାଜିରେ ରାଜଗୋପାଳାଚାରୀ ହିନ୍ଦୀ ବିରୋଧରେ ପ୍ରବଳ ଆନ୍ଦୋଳନ ଚଳାଇଲେ । ତାଙ୍କଠାକୁ ଏକ ଦୀର୍ଘପତ୍ର ଲେଖିଥିଲି । ସେ ମଧ୍ୟ ଏକ ଦୀର୍ଘ ଉତ୍ତର ଦେଲେ । ତାଙ୍କର ଉତ୍ତରକୁ ଜବାହରଲାଲଜୀଙ୍କ ଠାକୁ ପଠାଇଲି । ସେ ଯେଉଁ ଉତ୍ତର ଦେଲେ, ତାହା ମଧ୍ୟ ଏଠାରେ ଦିଆ-

ଯାଉଛି । ଦୁଃଖର ବିଷୟ ଆଜ ପର୍ଯ୍ୟନ୍ତ ଏ ବିଷୟଟି ଅମୀମାଂସିତ ହୋଇ ରହିଛି ।

## ରାଜାଜୀଙ୍କୁ ପତ୍ର—
## ତାଙ୍କର ଓ ଜବାହରଲାଲଙ୍କ ଉତ୍ତର :

D. O. No. 177 CM

Bhubaneswar,
The 1st February 1958

My dear Rajaji,

I was thinking of writing to you for sometime past but could not do so as I was not sure as to how you would receive my letter. At last I have taken courage to write this in whatever way you may treat it.

I was very much distressed to read in the papers that you called upon the people to 'agitate' against the Congress Resolution on the language issue. Then I read in the papers that you joined on the same platform with those who, along-with the language issue, have been agitating for a separate State for Tamiland. Sometime back I read in the papers also that you sensed the desire of the North to lord it over the South in the efforts for introducing Hindi as the official language. I do not know how far these reports are correct. If these are correct, these are very distressing, particularly for those who have looked upon you all along as a great representative and interpreter of the Gandhian era.

First of all, it is not clear to me whether it is necessary to 'agitate' which now-a-days means invariably setting fire to buses and such other acts of hooliganism in order to enforce a point of view. In every matter more than one view or judgement is possible. Therefore discussion has been held to be the best means of resolving differences. If 'agitation' is advocated in order to enforce a point of view, I do not know how more than one view can possibly exist in the same place and at the same time.



ଭୁବନେଶ୍ୱର ବିମାନଘାଟିରେ ଭାରତର ପ୍ରଥମ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା



ଭୁବନେଶ୍ୱରରେ ନିର୍ମିତ ରାଜ୍ୟ ସଂଗ୍ରହାଳୟର ଉଦ୍‌ଘାଟନ ଉତ୍ସବ ଅବସରରେ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ଉପସ୍ଥିତିରେ ଉଦ୍‌ବୋଧନ ଦେଉଛନ୍ତି ଡକ୍ଟର ମହତାବ

The next point is whether the point of view which is agitating the South is really a problem of the South. I think you are aware of the fact that the opinion in Bengal also is very strong on the language issue. As far as I am concerned, I submitted a memorandum to the Official Language Commission and spoke on the subject as Chancellor of the Karnatak University, suggesting that English should continue alongwith Hindi. I send herewith a copy of the memorandum which I submitted to the Language Commission and from this you will please see how there is strong opinion elsewhere similar to that expressed in the South also to clinet the language issue as an issue between the North and the South seems to be entirely wrong and misleading.

Coming to the language issue and the Resolution of the Congress on it, I do not see how a serious objection can be taken to any part of it unless one suspects the motives of those who are in charge of affairs now. Since I had something to do with the framing of the resolution which was passed at Gauhati, I am convinced that the resolution as it stands accommodates the opinion which I expressed to the Language Commission. The whole matter is now in the hands of a Committee but even then discussion should take place both in the press and the platform. Anything else seems to be not in the best interest of the country.

Since I know you have some affection for me and since I look upon you as a great thinker, I venture to write this to you which I hope you will not please mind.

Yours sincerely,
Sd/- (H. Mahatab)

Sri C. Rajagopalachari,
Bazlullah Road,
Thyagarayanagar,
Madras.

C. RAJAGOPALACHARI
9-2-58

60, Bazlullah Road
Tyagarayanagar
Madras-17

My dear Mahtab,

Your letter of Feb. 1 has been waiting to be acknowledged and replied to. My health has not been as good as its average for some time past, and your kind letter required a long explanation. But I cannot put it off any longer.

You at least should be able to understand me aright. Surely it does not require to be told how I love India and love it as a whole and in all its parts. I have not changed a bit.

I do not attribute the motive of domination to our colleagues but must I not point out feelings and consequences of even well-intentioned errors ?

The Hindi plan will lead to Disunity and not Unity. The vanity of wishes is illustrated in so many ways and this is one. We do something to produce unity and imagine that it will be accomplished, but alas ! it produces the opposite and we persist in misunderstanding those who point it out unpleasantly. We attribute the reports to those who point them out instead of to the causes that produce them.

The Hindi plan is a grave error. I want the lingua franca to spread. But it will not spread through this method. It is not a language that should replace English at the Union level. Five delusions are at the bottom of this Hindi plan, पञ्चमोह ।

1. The secret of the English language in India is not that it was forcibly made the official language by foreigners governing India, but its being the sole gateway of all our modern knowledge and its benefits. To deem it 'foreign' and worthy of ejection is मोह ।

2. The doctrine of identity language but not people and government cannot be fulfilled at Union level where there are fourteen states and nearly as many languages each commanding millions of votaries. Each state government and its people can establish fullest identity of language between people and Govt. & thus the doctrine can be fulfilled. Not by making one language that is mother tongue of a few states, the Union language for all. This is a delusion. We can never achieve language identity between Govt. and people by means of a single language.

3. Hindi is not rich enough and good enough for Union official work. That it can oneday become good enough may or may not be true. But it will result in waste and inefficiency. It is an unnecessary and wasteful attempt. It should take its proper place in the three or four Hindi States.

4. The attempt to make Hindi the Union language is based on delusion born of love—the Hindi people's love of their own language—it does not appeal to those who speak other languages. But there is a subtle delusion behind this viz. that Hindi will oneday ( and soon ) become the spoken language of all people in India. It will not happen, can never happen. This is a pure delusion.

5. That one Union language will produce unity is also a delusion. Causes produce effects, not the other way about. Paper unity with heart-burning in three-fifths of India will not be unity such as we want.

Forgive me but understand me.

Yours affly
Sd/-C. Rajagopalachari

CONFIDENTIAL

No. 491—PHM/58
New Delhi,
March 9, 1958

My dear Mahtab,

Your letter of the 3rd March, enclosing a letter from Rajaji, I am afraid it is quite impossible to argue with Rajaji

now on this subject. He has developed a passion and has quite ceased to be objective or detached. He talks about the 'panchmoh', the five delusions. It is easy to retort that he is suffering from various 'mohs'.

I realise that some Hindi protagonists often misbehave, although I must say that they have been very quite of late, and all the aggressiveness has come from the other side.

No body denies the importance of the English language. I am sure it will spread more in the future than in the past. No body wants forcibly to impose Hindi. We have also made it clear that English will continue as an inevitable accessory language. For the rest, we want events to shape themselves. Our attitude is a flexible one, though certainly it aims in a particular direction. I really do not understand all this excitement.

But, quite apart from the merits of the case, Rajaji's approach and the new contacts he is developing, seem to me most unfortunate.

Yours sincerely,
Sd/-Jawaharlal Nehru.

Dr. Harekrushna Mahtab,
Chief Minister of Orissa,
Bhubaneswar

ସଂଖ୍ୟାଲଘିଷ୍ଠ ଥାଇ ମଧ କଂଗ୍ରେସ ଶାସନଭାର ଗ୍ରହଣ କରିବାକୁ ସ୍ଥିର କରିବା ପରେ, ଆଉ ଇତସ୍ତତଃ ନ ହୋଇ ଦୃଢ଼ ଭାବରେ ଶାସନ ଏବଂ ମୋର ନିଜର ଅନ୍ୟ କାର୍ଯ୍ୟକ୍ରମ ଚାଲୁ ରଖିବାରେ ଲାଗିଲି । ବମ୍ବେ ବନ୍ଧୁମାନଙ୍କ ଅନୁରୋଧରେ ପି. ଇ. ଏନ୍ (P. E. N.) ସମ୍ମିଳନୀ ଆହୂତ ହେଲା ଏବଂ ଏହା ସୁଚାରୁ ରୂପେ ପରିଚାଳିତ ହେଲା । ସମ୍ମିଳନୀ ପାଇଁ

ମଣ୍ଡପ ନ ଥିବାରୁ କ୍ୟାପିଟାଲ ହାଇସ୍କୁଲରେ ଅନୁଷ୍ଠିତ ହୋଇଥିଲା । ରାଜଭବନ କଟକରେ ଥିବାରୁ ରାଜ୍ୟପାଳଙ୍କ ଭୋଜରେ ଯୋଗଦେବା ପାଇଁ ସମସ୍ତ ସଭ୍ୟ କଟକ ଯାଇଥିଲେ । ମୋର ଓଡ଼ିଶା ଇତିହାସ ପ୍ରଥମ ସଂସ୍କରଣ ୧୯୪୮ରେ ପ୍ରକାଶିତ ହୋଇଥିଲା । ଏହାର ଦ୍ୱିତୀୟ ସଂସ୍କରଣ ପାଇଁ ଲାଗିପଡ଼ିଲି । ସମସ୍ତ ସନ୍ଧ୍ୟା ଏଥିରେ କାଟୁଥିଲି । ଖ୍ରୀ ୧୯୫୯ରେ ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେଲା । ଏହା ହିଁ ଆଜିପର୍ଯ୍ୟନ୍ତ ଚାଲୁରହିଛି । ଖ୍ରୀ ୧୯୫୪ରେ ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ଭୂମିକା ସମ୍ବନ୍ଧରେ ଏକ ଇତିହାସ ପ୍ରକାଶନ ପାଇଁ ଗୋଟିଏ କମିଟି ଗଠନ କରି ମୁଁ ଥିଲି ତାହାର ମୁଖ୍ୟ ସମ୍ପାଦକ । ଅଧ୍ୟାପକ ଘନଶ୍ୟାମ ଦାସ, ସୁଧାକର ପଟ୍ଟନାୟକ, ସୁଶୀଲ ବସୁ, ପ୍ରଭାତ ମୁଖାର୍ଜୀ ପ୍ରମୁଖ ସଭ୍ୟ ଥିଲେ । ଏ କାର୍ଯ୍ୟଟି ଧିମେଇ ଯାଇଥିଲା । ଏହାକୁ ଭିତ୍ତି କରି ଆଉ ଏକ ପଦକ୍ଷେପ ନେଲି । ଓଡ଼ିଶାରେ ଯେତେ ଓ ଯେଉଁଠି ଗଣ-ଆନ୍ଦୋଳନ ହୋଇଛି, ସେ ସମ୍ପର୍କରେ ସରକାରଙ୍କଠାରେ ଯେତେ ଗୋପନୀୟ କାଗଜପତ୍ର ଅଛି, ସେସବୁ ସଂଗ୍ରହ କରି ପ୍ରକାଶ କରିବା ପାଇଁ ଏକ କମିଟି ନିଯୁକ୍ତ କରାଯାଇଥିଲା । ମୁଁ ହେଲି ମୁଖ୍ୟ ସମ୍ପାଦକ, ସୁଶୀଲ ବସୁ ହେଲେ ସହ-ସମ୍ପାଦକ, ପ୍ରଭାତ ମୁଖାର୍ଜୀ, ଘନଶ୍ୟାମ ଦାସ ପ୍ରମୁଖ ଐତିହାସିକମାନେ ସଭ୍ୟ ହେଲେ । ଏହା ସମ୍ପୂର୍ଣ୍ଣ ବେସରକାରୀ ଥିଲା । ଗୋଟିଏ ଭଲ୍ୟୁମରେ ଏହା କମିଟି ଦ୍ୱାରା ପ୍ରକାଶିତ ହେଲା । ଏଥିପାଇଁ କାଗଜପତ୍ର ସଂଗୃହୀତ ହୋଇଥିଲା କମିଶନର ଅଫିସ୍, କଲେକ୍ଟରମାନଙ୍କ ଅଫିସ ଓ ପୋଲିସ୍ ଅଫିସ୍‌ରୁ । ଏହାର ନାମ ରଖାଗଲା ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନର ଇତିହାସ । ମୁଖବନ୍ଧରେ ଲେଖିଥିଲି— କ୍ରମେ କ୍ରମେ ସ୍ଥାନୀୟ ଆନ୍ଦୋଳନରୁ ଶେଷରେ ପ୍ରାୟ ଦୁଇଶହ ବର୍ଷ ପରେ ସ୍ୱାଧୀନତା ଆନ୍ଦୋଳନ ହୋଇଥିଲା । ଏ ପୁସ୍ତକର ପୁନଃମୁଦ୍ରଣ ଆବଶ୍ୟକ ହେଉଛି, କିନ୍ତୁ ଏହାର ପ୍ରକାଶନ କମିଟି ନ ଥିବାରୁ ଏହାକୁ କୌଣସି ପ୍ରକାଶକ ଆଇନ୍ ଅନୁସାରେ ମୁଦ୍ରଣ କରିପାରୁନାହାନ୍ତି ।

ଓଡ଼ିଶାରେ ମ୍ୟୁଜିୟମ ନିର୍ମାଣ ପାଇଁ ଏକ କମିଟି ନିଯୁକ୍ତ କଲି । ଏଥିରେ ମୁଖ୍ୟମନ୍ତ୍ରୀ ସଭାପତି ଏବଂ ଶିକ୍ଷାବିଭାଗର ନିର୍ଦ୍ଦେଶକ ଓ ଚିଫ୍ ଇଞ୍ଜିନିୟର ସଭ୍ୟ । ଶିକ୍ଷାବିଭାଗ ବଜେଟରେ ଯେଉଁ ଅର୍ଥ ଖର୍ଚ୍ଚ ନ ହୋଇ

ପରବର୍ତ୍ତୀ ବଜେଟ୍‌କୁ ଗୃହୀତ ହୋଇଥିଲା, ସେ ଅର୍ଥକୁ ଏ କମିଟି ବ୍ୟବହାର କରି ନିଆ ହେଲା । ଏହି ଅର୍ଥରେ ମ୍ୟୁଜିୟମ ଓ ତତ୍‌ସଂଲଗ୍ନ ଏକାଡେମୀମାନଙ୍କ ଅଫିସ ଏବଂ ସାଂସ୍କୃତିକ ସଭା ପାଇଁ କଳାମଣ୍ଡପ ନିର୍ମିତ ହୋଇଥିଲା । ଏସବୁ ପାଇଁ ସ୍ୱତନ୍ତ୍ରଭାବେ ବଜେଟ୍‌ରେ ବ୍ୟବସ୍ଥା ନ ଥିଲା ।

ଖ୍ରୀ. ୧୯୪୮ରେ ମୁଖ୍ୟମନ୍ତ୍ରୀ ଥିବା ସମୟରେ Indian Historical Review Commissionerଙ୍କୁ କଟକ ନିମନ୍ତ୍ରଣ କରିଥିଲି । ପୁଣି ପ୍ରାୟ ଦଶବର୍ଷ ପରେ ଦ୍ୱିତୀୟଥର ମୁଖ୍ୟମନ୍ତ୍ରୀ ହେବା ପରେ ଏହି ଅନୁଷ୍ଠାନକୁ ଭୁବନେଶ୍ୱର ନିମନ୍ତ୍ରଣ କଲି । ବହୁ ସଭ୍ୟ ଯୋଗ ଦେଇଥିଲେ । କେନ୍ଦ୍ର ଶିକ୍ଷାମନ୍ତ୍ରୀ ଶ୍ରୀ କେ. ଏଲ୍. ଶ୍ରୀମାଳି ସଭାପତିତ୍ୱ କରୁଥିଲେ । ରାଜ୍ୟପାଳ ଉଦ୍‌ଘାଟନ କରିଥିଲେ, ସମସ୍ତ ସଭ୍ୟ ଓଡ଼ିଶା ସରକାରଙ୍କ ଅତିଥି ଥିଲେ । ତିନଦିନ ବ୍ୟାପୀ ଏହାର ବୈଠକ ଚାଲିଥିଲା । ଐତିହାସିକମାନେ ଓଡ଼ିଶାର ବିଭିନ୍ନ ଐତିହାସିକ ସ୍ଥାନ ପରିଦର୍ଶନ କରିଥିଲେ ।

ଶ୍ରୀ କେ. ଏମ୍ ମୁନ୍‌ସି ଲେଖିଲେ ପୁରୀରେ ନିଖିଳ ସଂସ୍କୃତ ପରିଷଦର ଏକ ଅଧିବେଶନ କରିବା ପାଇଁ । ଏ ଅଧିବେଶନକୁ ରାଜସ୍ଥାନ ନିମନ୍ତ୍ରଣ କରିଥିଲା । କିନ୍ତୁ ମୁନ୍‌ସିଙ୍କ ଇଚ୍ଛା ଏହା ପୁରୀରେ ହେଉ । ମୁଁ ସମ୍ମତ ହେଲି । ଏଣେ ରାଜନୈତିକ ଅସ୍ଥିରତା ସମ୍ବାଦ ପ୍ରକାଶ ପାଉଥାଏ । ମଝିରେ ମୁନ୍‌ସି ଲେଖିଲେ ପୁରୀରେ ଅଧିବେଶନ ସମ୍ଭବ କି ନା ଜଣାଇବା ପାଇଁ । ଏହାର ଉତ୍ତରରେ ଲେଖିଲି, ରାଜନୈତିକ ଅସ୍ଥିରତା ଯୋଗୁ ସାଂସ୍କୃତିକ କାର୍ଯ୍ୟ ଅବହେଳିତ ହେବା ଉଚିତ୍ ନୁହେଁ । ଅଧିବେଶନ ପୁରୀରେ ହେଲା । ଅଭ୍ୟର୍ଥନା ସମିତିରେ ମୁଁ ସଭାପତି । ଡକ୍ଟର ସୁରେନ୍ଦ୍ର ଆଚାର୍ଯ୍ୟ ସମ୍ପାଦକ, ଏମାର ମଠ ମହନ୍ତ ଉପ-ସଭାପତି । ରାୟବାହାଦୂର ଲୋକନାଥ ମିଶ୍ର ଶିଳ୍ପପତି ବାଙ୍ଗୋର ପ୍ରମୁଖ ସଭ୍ୟ ରହିଲେ । ଯେତେ ସଂଖ୍ୟାରେ ଅତିଥି ଆସିବେ, ସମସ୍ତଙ୍କ ପାଇଁ ଧର୍ମଶାଳାମାନଙ୍କରେ ସ୍ଥାନ ହେବ ନାହିଁ । ଏଣୁ ସ୍କୁଲ ସବୁ ବନ୍ଦ କରି ଦିଆହେଲା । ଭୋଜନ ବ୍ୟବସ୍ଥାର ଦାୟିତ୍ୱ ଏକ କମିଟି ହାତରେ ଦିଆ ହୋଇଥିଲା । ସଭା ହୋଇଥିଲା କେନ୍ଦ୍ର ସଂସ୍କୃତ ବିଦ୍ୟାଳୟ ହତାରେ । ଅଭ୍ୟର୍ଥନା ସମିତିର ସଭାପତି ହିସାବରେ

ସଂସ୍କୃତରେ ଭାଷଣ ଦେଇଥିଲି । ଏ ଅଧିବେଶନକୁ ସମସ୍ତ ଖର୍ଚ୍ଚ ଯୋଗାଣର ବ୍ୟବସ୍ଥା ସରକାରଙ୍କର ନ ଥିଲା । ସରକାରୀ ସାହାଯ୍ୟ ମାତ୍ର ଟ ୨,୫୦୦/- । ଅବଶିଷ୍ଟ ମଠାଧୀଶ ଓ ଅନ୍ୟମାନଙ୍କଠାରୁ ସଂଗୃହୀତ ହୋଇଥିଲା । ଜଗନ୍ନାଥ ମନ୍ଦିରର ମହାପ୍ରସାଦ-ମଣ୍ଡ ଅତିଥିମାନଙ୍କ ଭୋଜନ ବ୍ୟାପାରରେ ପ୍ରଭୂତ ସାହାଯ୍ୟ କରିଥିଲା । ଏହି ଅଧିବେଶନରେ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା । ବାରାଣସୀରେ ଯେପରି ଉତ୍ତରପ୍ରଦେଶ ସରକାର ଏକ ସଂସ୍କୃତ ବିଶ୍ୱବିଦ୍ୟାଳୟ ସ୍ଥାପନ କରିଛନ୍ତି, ସେହିପରି ଶ୍ରୀକ୍ଷେତ୍ରରେ ଓଡ଼ିଶା ସରକାର କରନ୍ତୁ । ୧୯୫୯ ଅପ୍ରେଲ ମାସର ପ୍ରସ୍ତାବ କାର୍ଯ୍ୟକାରୀ ହେଲା ଖ୍ରୀ. ୧୯୮୦ରେ କଂଗ୍ରେସ ଶାସନ କାଳରେ । ଏଥିପାଇଁ ଧନ୍ୟବାଦର ପାତ୍ର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ।

କେନ୍ଦ୍ରର ମନ୍ତ୍ରୀ ଥିବା ସମୟରେ ରାଉରକେଲା ଇସ୍ପାତ୍ କାରଖାନା ସ୍ଥାପନ ପାଇଁ ଜାପାନର ଏକ ପ୍ରତିଷ୍ଠିତ କମ୍ପାନୀ ସହ କଥାବାର୍ତ୍ତା ଚଳାଇ-ଥିଲି । ସେମାନେ ଭାରତରୁ ଲୁହାପଥର ନେବେ ଓ ତାହାର ମୂଲ୍ୟରେ ପାରାଦୀପ ପୋର୍ଟରୁ ରାଉରକେଲା ପର୍ଯ୍ୟନ୍ତ ରେଲଲାଇନ୍ ଏବଂ ଇସ୍ପାତ କାରଖାନା ବସାଇବେ । ଲୁହାପଥର ରପ୍ତାନି ବାବଦ ମୂଲ୍ୟରେ ଏ କାର୍ଯ୍ୟ ଠିକଣାରେ ଭାବରେ କରାଯିବ । ଏହିପରି କୌଶଳରେ ବହୁ ଉନ୍ନୟନ କାର୍ଯ୍ୟ ହୋଇଯିବ ବୋଲି ମୁଁ ମନ୍ତ୍ରିମଣ୍ଡଳକୁ ରାଜି କରାଇଥିଲି । ସେକ୍ରେଟାରୀ ଥିଲେ ସି. ସି. ଦେଶାଇ । ସେ ଜାପାନ ଯାଇ ଏଗ୍ରିମେଣ୍ଟ ଦସ୍ତଖତ କରିବା କଥା ସ୍ଥିର ହେଲା । ଇତିମଧ୍ୟରେ ପଶ୍ଚିମ ଜର୍ମାନୀର କ୍ରୁପ୍ କମ୍ପାନୀ ଅର୍ଥ ବିଭାଗର କେତେକ ଅଫିସରଙ୍କୁ ବୁଝାଇଦେଲେ ଯେ, ମୋ' ପ୍ରସ୍ତାବରେ ଜାପାନ ଲାଭବାନ ହେବ । କାରଣ ଲୁହାପଥରର ମୂଲ୍ୟ ସ୍ଥିର ନୁହେଁ । ଯେଉଁ ଦରରେ ସେମାନେ ନେଇଥିବେ ଏବଂ କାମ କରୁଥିବେ, ଏହା ଭିତରେ ଦରଂ ବଢ଼ିଗଲେ, ଜାପାନ ଶସ୍ତାରେ ଲୁହାପଥର ପାଇଯିବ । ଅର୍ଥ ବିଭାଗର ଏ ମତ ଶେଷରେ ଗୃହୀତ ହେଲା ଓ ସି. ସି. ଦେଶାଇଙ୍କ ଜାପାନ ଯିବା ବନ୍ଦ ହେଲା । କ୍ରୁପ୍ସ୍ କମ୍ପାନୀ ରାଉରକେଲା ପ୍ଲାଣ୍ଟ ବସାଇଲେ । ଠିକ୍ ସେହିପରି ଉପାୟରେ ପାରାଦୀପ ପୋର୍ଟ ନିର୍ମାଣ କରିବା କଥା ମନକୁ ଆସିଲା । ଏ ସମ୍ପର୍କରେ ଡକ୍ଟର ଟି. ହିଡ଼ା (Dr. T. Hida)ଙ୍କ ଠାରୁ ନିମ୍ନଲିଖିତ ପତ୍ର ପାଇଥିଲି ।

Dr. T. Hida

Camp : West End Hotel,
Bangalore,
4th Jan : 1958

Dear Sir,

I, the Leader of the Harbour Team, Japanese Survey Mission for Long Term Indian Iron Ore programme, hasten to thank you during my short stay in Bangalore City for your kind consideration and assistance extended to my team during their visit to your Place.

We could study and understand quite well all the port projects in detail by the data which you kindly gave us. It is my great pleasure to tell you that we may complete our survey of East Coast Ports and we are preparing the report on every possibility of the development of your port.

Furthermore, I was deeply impressed with the friendship of your people to the Japanese. Our members join me in conveying my best personal regards to you as well as to your staff.

Hoping your port could export more and more Iron ore to Japan for our mutual benefit.

Yours sincerely,
( T. Hida )

To,

Dr. Harekrushna Mahtab,
Chief Minister, State Government of Orissa,
Bhubaneswar.

ଏ ଯୋଜନା ଆଗକୁ ଗତି କଲା ନାହିଁ । ପୁଣି ସେହି ପୁରୁଣା ପ୍ରଶ୍ନ—ଲୁହାପଥର ଦର ବୃଦ୍ଧି ଓ ହ୍ରାସ ହିସାବ ଅନୁସାରେ ସେମାନେ କାର୍ଯ୍ୟ କରିବେ ନାହିଁ । ଏକ ନିର୍ଦ୍ଧାରିତ ମୂଲ୍ୟରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କାର୍ଯ୍ୟ କରିବେ । ପାରାଦୀପ ବନ୍ଦର ନିର୍ମାଣ ଯୋଜନା ଧିମେଇଗଲା । ଅବଶ୍ୟ ଚାରି ପାଞ୍ଚ ବର୍ଷ ପରେ ବିଜୁ ପଟ୍ଟନାୟକ ଓଡ଼ିଶା ସରକାରଙ୍କ ଖର୍ଚ୍ଚରେ ପୋର୍ଟ କରାଇଥିଲେ । ଏହାକୁ ଭାରତ ସରକାର ପରେ ହାତକୁ ନେଲେ । ଓଡ଼ିଶା ସରକାରଙ୍କ ଖର୍ଚ୍ଚକୁ ଋଣ ରୂପରେ ଗ୍ରହଣ କରି ଏହା ପରେ ପରିଶୋଧ କରାହେବ ବୋଲି ସ୍ଥିର ହେଲା । ସେ ଯାହାହେଉ, ଏହି ପୋର୍ଟ ବିଜୁପଟ୍ଟନାୟକଙ୍କ ସାହସ ଓ କର୍ମଦକ୍ଷତାର ସାକ୍ଷୀ ହୋଇ ରହିବ ।



ରାଜ୍ୟ ସଚିବାଳୟର ଉଦ୍‌ଘାଟନ ଉତ୍ସବରେ ପଣ୍ଡିତ ଗୋବିନ୍ଦବଲ୍ଲଭ ପନ୍ଥଙ୍କ ସହ
ଡକ୍ଟର ମହତାବ



ଭୁବନେଶ୍ୱରରେ ନବନିର୍ମିତ ରାଜଭବନରେ ଡକ୍ଟର ମହତାବ୍

ଓ୍ୱିଲ୍‌ହେମ୍ ଭନ୍ ପୋକ୍‌ହାମର ବମ୍ବେରେ ପଶ୍ଚିମଜର୍ମାନର କନ୍‌ସଲ ଜେନେରାଲ ଥିଲେ । ସେଠି ତାଙ୍କ ସହିତ ମୋର ବନ୍ଧୁତା ହୋଇଥିଲା । ତାଙ୍କଠାକୁ ମଧ୍ୟ ପାରାଦ୍ୱୀପ ପୋର୍ଟ ସଂକ୍ରାନ୍ତ ତଥ୍ୟସବୁ ପଠାଇଥିଲି । ମିଳିତ ମନ୍ତ୍ରିମଣ୍ଡଳ ତାଙ୍କୁ ଭୁବନେଶ୍ୱର ଡାକିଥିଲେ । ସେ ଆସିଥିଲେ । ଜର୍ମାନ ଯାଇ ସେଠାରେ ଓଡ଼ିଶାର ଯୋଜନା ଆଲୋଚନା କରିବାର ସ୍ଥିର ହୋଇଥିଲା । ଏକ ଫଟୋସହ ସେ ମୋତେ ଲେଖିଥିବା ପତ୍ର ଓ ମୋର ଉତ୍ତର ପଦସ୍ଥ କରୁଛି ।

Wilhelm von Pochhammer
Former German Consul General

Bremen-Oberneuland, 15th August 1959
Oberneulander Landstr. 70

Dr. H. Mahtab,
Chief Minister, Orissa
BHUBANESWAR

Dear Chief Minister,

It was only a very short thank which we could wire to you before continuing our trip which, after-wards, became a rather strenous one. But, in the mean time, we have safely returned to Germany, and both of us wish to repeat our sincerest thanks for the wonderful hospitality which you have shown to us during our stay at Bhubaneswar. We have thoroughly enjoyed to meet you and to see the wonderful beauties of Orissa's art and architecture.

Enclosed you will find a photo which was, unfortunately, taken too late, when the light was dim. But keep it as a souvenir of some visitors who would not stand behind others, as far as enthusiasm for India and friendly wishes to you are concerned.

I have spoken about your planned visit to Germany, and I found a keen interest at Bonn on the part of Messrs. Fried. Krupp A. G. Both would like very much to learn at your earlist convenience at what time your visit would take place. Please let us know as early as possible what exactly your plans will be. I do hope that I will have an opportunity of meeting you here at Bremen, where you can visit the only steel-plant near the ocean and other interesting things.

Once more our best thanks, from my wife as well as from myself, and all good wishes for your personal health and for your political work.

Always yours very sincerely,
(Wilhelm Von Pochhammer)

Bhubaneswar
Orissa

D.O.N. 1742 CM — The 13th October 1959

My dear Von Pochhammer,

I received your letter with the Photograph, dated the 15th August. Then I received your letter dated the 7th September. I am sorry I could not reply to you earlier as I was very busy in connection with the session of the legislature.

I am so glad that you are taking so much interest in Indian affairs and trying to build up a very strong bridge between our two countries. I am sure you will succeed.

As regards Paradip Port, I have asked our Department to send you all the materials.

Please remember me to Mrs. Pochhammer and all friends. Hope all of you are doing well.

Yours sincerely,
( H. Mahtab )

Wilhelm Von Pochhammer, Esq.,
Former German Consul General,
Bremen-Oberneuland,
Oberneulander Landstr. 70
W. Germany

କେନ୍ଦ୍ରରେ ମନ୍ତ୍ରୀ ହୋଇଯିବା ଦିନୁଁ ଇଂଲଣ୍ଡର 'ମାଞ୍ଚେଷ୍ଟର ଗଡ଼ଆନ’ ପତ୍ରିକା ସହିତ ମୋର ଘନିଷ୍ଠ ସମ୍ବନ୍ଧ ହୋଇଥିଲା । ପତ୍ରିକାର ଫାଇନେନ୍ସିଆଲ ଏଡିଟର ଥରେ ମୋତେ ଦେଖାକରିବା ପାଇଁ ଭୁବନେଶ୍ୱର ଆସିଥିଲେ । ସେତେବେଳେ ସଂଖ୍ୟାଲଘିଷ୍ଠ ଶାସନ ଚଳାଇବାରେ ମୁଁ ବିବ୍ରତ ଥିଲି । ତଥାପି ଆମ ଭିତରେ ବହୁ ବିଷୟ ଆଲୋଚନା ହେଲା । ସେ ଭୁବନେଶ୍ୱର ଛାଡ଼ିବା ପୂର୍ବରୁ ଯେଉଁ ପତ୍ରଟି ଲେଖି ଦେଇଗଲେ, ତାହା ଏହି

THE MANCHESTER GUARDIAN

FINANCIAL EDITOR
CITY 5050.

45, FLEET STREET,
LONDON, E.C.4.

Dr. H. Mahtab,
Chief Minister

Gup. File

State Guest House,
Bhubaneswar,
3rd October 1958

My dear Dr. Mahtab,

Before I leave this beautiful state of yours, I want to thank you most sincerely for the hospitality you have shown to my wife and myself. We have had highly interesting time and have enjoyed it immensely.

I was particularly grateful for the opportunity of a long talk with you. The problems of Orissa are now a great deal clearer to me. It seems to me that you have no need to feel any sense of failure. When I read your article on the role of faith in Indian progress I remembered how in 1937, eight months after the first Congress government was installed with huge enthusiasm, Mr Rajagopalachari said 'the tea has grown cold. Congress has lost its enthusiasm'. Yet 21 years later Congress is still the only power in India that is able to do anything on a large scale.

With kind regards
Yours sincerely
Richard Fry

ଦିଲ୍ଲୀରେ ଅବସ୍ଥାପିତ ଇଉନାଇଟେଡ୍ କିଙ୍ଗ୍‌ଡମ୍ ହାଇକମିଶନରଙ୍କ ସହିତ ମୁଁ ବମ୍ବେରେ ଥିବା ସମୟରେ ବନ୍ଧୁତା ହୋଇଥିଲା । ମୁଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲାବେଳେ ସେ ମଧ୍ୟ ଭୁବନେଶ୍ୱର ଆସିଥିଲେ । ତାଙ୍କର ପତ୍ର :

**PERSONAL AND PRIVATE**

OFFICE OF THE HIGH COMMISSIONER
FOR THE UNITED KINGDOM,
6 TEES JANUARY MARG,
NEW DELHI-2
2nd January 1959.

Dear Chief Minister,

Thank you for your very friendly hospitality to Mrs. MacDonald and me in Bhubaneswar. It was privilege to meet you and your colleagues at dinner, and to have such interesting conversation with you all. Above all, Audrey and I were very happy to see you again. We have always remembered your kindnesses to us in Bombay, and I have often since wished to come to Orissa to talk with you. It was good to find you recovered in health, and in your customary excellent, vigorous spirits.

If I may say so, I have watched with the keenest interest and sympathy your leadership in Orissa, and I greatly admire the way in which you have handled a difficult situation. My glimpses of the towns and countryside in the State this week impressed me with the effective progress that is being made in various directions. The climax of my inspections of several development works was, of course, the visit to Hirakud Dam. What a magnificent achievement ! I have talking a great deal about it to many people ever since.

When I tried to pay my bill at the Guest House I was told that Mrs. MacDonald and I were guests of the State

Government. It was extraordinarily friendly of you and your colleagues to treat us in this way. A thousand thanks.

With warm regards and good wishes
Yours sincerely
Sd/- Malcom MacDonald

The Honourable Chief Minister
The Secretariat
BHUBANESWAR
Orissa

ମଧ୍ୟପ୍ରଦେଶର ସାଗର ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ଦୀକ୍ଷାନ୍ତ ଭାଷଣ ଦେବାପାଇଁ ନିମନ୍ତ୍ରଣ ଆସିଥିଲା । ସେତେବେଳକୁ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହୋଇସାରିଥିବାରୁ ମୁଁ ଅପେକ୍ଷାକୃତ ଟିକିଏ ନିଶ୍ଚିନ୍ତ ଥିଲି । ସେଠାର ସମାବର୍ତ୍ତନରେ ଓ ପରେ ସେଠାକାର ରୋଟାରି କ୍ଲବରେ ଭାଷଣ ଦେଇଥିଲି । ମୋର ଏହି ଭାଷଣ ସମ୍ବନ୍ଧରେ ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାରଙ୍କର ଦୁଇଟି ଚିଠି

ISHWAR CHANDRA, M.A.

THE UNIVERSITY OF SAUGAR
Sagar, the 12th Decr., 1959
D. O. R, 20/1112

My dear Dr. Mahtab,

May I be permitted to say how immensely grateful we feel for the honour you did us by delivering the Convocation Address at our University this year.

Believe me when I say that it was after a very long time that we had an opportunity of listening to such an inspiring address. It was a masterpiece of erudite scholarship.

As desired by you I am sending herewith two copies of B. A. (Classics) syllabus.

I hope you are doing well.

With kindest regards,

Yours sincerely
Sd/- Ishwar Chandra

If you need me there I am at your command.

To

Dr. Harekrushna Mahtab, D. Lit...LL. D
Chief Minister
Government of Orissa
BHUBANESWAR

UNIVERSITY OF SAUGAR
Sagar, the 12th December, 1959

My dear Dr. Mahtab,

May I express and convey to you, on behalf of the Rotary Club of Sagar, our grateful thanks for the honour you did us by accepting our invitation to address the Club on November the 28th, 1959. Your noble address replete with wit and wisdom, with profound scholarship and practical sagacity, not only moved our minds and swayed our hearts, but has effectively influenced our thought and conduct.

We pray, you come again, and speak to us of other things.

We shall cherish the very pleasant memory of your visit to the Club for many a happy day to come.

I am,
Yours gratefully
Sd/- Ishwar Chandra
University, Registrar
&
President, Rotary Club of Sagar

Dr. Harekrushna Mahtab
Chief Minister of Orissa
Bhubaneswar

ଏହି ବିଶ୍ୱବିଦ୍ୟାଳୟର ଭାଇସ୍-ଚାନ୍ସେଲର ଥିଲେ ଡକ୍ଟର ଦ୍ୱାରିକା ପ୍ରସାଦ ମିଶ୍ର ।

ଆମେରିକାନ୍ ଏମ୍ବାସିର ରାଜନୈତିକ ବ୍ୟାପାର ପରାମର୍ଶଦାତା ଏଡୱାର୍ଡ୍ ମାଫିଂଟ୍ ଓଡ଼ିଶା ଆସିଥିଲେ । ତାଙ୍କର ପତ୍ର :

THE FOREIGN SERVICE
OF THE
UNITED STATES OF AMERICA

American Embassy,
New Delhi, India
February 20, 1958.

Dear Mr. Chief Minister,

Let me once again express to you the appreciation of my colleague, Charles Naas, and myself for your hospitality and thoughtfulness towards us during our recent visit to your state. Your staff were unfailingly cooperative, resourceful and helpful and to your efforts I attribute much of the usefulness as well as of the pleasure of the visit. It was an unexpected pleasure to lunch with you on the 18th. I wish we had more time for an exchange of ideas, since I tnink we very quickly reached ground usually reserved for longer acquaintance, and successfully negotiated it.

I talked to Neena Thimayya by telephone this afternoon and told her you hoped to have them come and see Orissa. She seemed interested by what I told her of my visit and said she had always considered Orissa a place she should see.

With the hope that I may in my own small way before too long be able to offer you hospitality, I am,

Sincerely yours,
Sd/- Edward P. Maffitt
Counselor for Political Affairs

Dr. Harekrushna Mahtab
Chief Minister of Orissa State
Bhubaneswar, Orissa

ଏସବୁ କାମ ଚାଲିଥିଲେ ମଧ୍ୟ ରାଜ୍ୟରେ ଆଖିଦୃଶିଆ କାମ ତ ଦୂରର କଥା, ସାଧାରଣ ଶାସନ ମଧ୍ୟ ଚଳାଇବା କଷ୍ଟକର ହେଲା । ସଂଖ୍ୟାନ୍ୟୂନଙ୍କୁ ସଂଖ୍ୟାଧିକ କରିବା ପାଇଁ ଅଜସ୍ର ଖର୍ଚ୍ଚ କରିବାକୁ

ହେଉଥାଏ । ଏହାକୁ ଖାରେନ୍ ମିନ୍ ସମ୍ଭାଳୁଥାନ୍ତି । ସେ ଥା'ନ୍ତି ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି । ଏଣେ ନିଜ ଦଳ ମଧ୍ୟରେ ସେପରି ସଂହତି ନ ଥାଏ । ମନ୍ତ୍ରୀ କେତେଜଣ ଅସନ୍ତୁଷ୍ଟ, କାରଣ ସେମାନଙ୍କ କଥା ରହୁନାହିଁ । ସଭ୍ୟ କେତେଜଣ ଅସନ୍ତୁଷ୍ଟ—ସେମାନେ ମନ୍ତ୍ରୀ ହେଲେ ନାହିଁ । ଏପରି ଥରେ ଘଟିଲା ଯେ ଭୋଟ ପାଇଁ ଘଣ୍ଟି ବାଜିଲା । ଅଥଚ ଜଣେ ପ୍ରତିଷ୍ଠିତ ସଭ୍ୟ କ୍ୱାର୍ଟରରେ ରହି ଆସୁ ନ ଥାନ୍ତି । ଖବର ପଠା ହେଲା । ସେ ଜିଦ୍ ଧରିଥାନ୍ତି, ମନ୍ତ୍ରୀ ନହେଲେ ଆସିବେ ନାହିଁ । ଭାଗ୍ୟବଶତଃ ସେ ନ ଆସିଲେ ମଧ୍ୟ ସରକାରୀ ଦଳ ହାରିଗଲା ନାହିଁ । କିନ୍ତୁ ମୁଁ ମନେ ମନେ ସ୍ଥିର କରିନେଲି, ଅବସ୍ଥା ଯେପରି, ସେଥିରେ ମିଳିତ ମନ୍ତ୍ରିମଣ୍ଡଳ ହିଁ ଏକମାତ୍ର ଗଣତାନ୍ତ୍ରିକ ସାଧୁତା । ଓଡ଼ିଶା ହେଉଛି ଭାରତର ପ୍ରତୀକ । ସବୁ ଅଞ୍ଚଳ ସମଭାବରେ ରାଜନୈତିକ ସ୍ଥିତିରେ ନାହାନ୍ତି । କଂଗ୍ରେସ ମଧ୍ୟ ସବୁ ଅଞ୍ଚଳରେ ପ୍ରଭାବ ବିସ୍ତାର କରିପାରିନାହିଁ । ଗାନ୍ଧୀ ନାମ ସେତେବେଳେ ସର୍ବତ୍ର ଥିଲେ ମଧ୍ୟ କଂଗ୍ରେସ ବହୁ ଅଞ୍ଚଳରେ ଅଜଣା ଏବଂ କଂଗ୍ରେସର ପ୍ରଭାବ ସର୍ବତ୍ର ସମାନ ନୁହେଁ । ଏ ଯେପରି କଂଗ୍ରେସର ଅବସ୍ଥା, ସେହିପରି ଅନ୍ୟ ଦଳମାନଙ୍କର ମଧ୍ୟ । ଏଥିରେ ଗଣତନ୍ତ୍ରର ସାଧୁତା ଆବଶ୍ୟକ କରେ ବୁଝାମଣା କରି ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମରେ ଏକତ୍ର ହୋଇ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିବା । ଅନ୍ୟଥା ଭୋଟ ପାଇଁ ଲାଞ୍ଚ ଦେଇ ସଭ୍ୟ ସଂଖ୍ୟା ହାସଲ କରିବା ଦ୍ୱାରା ଦେଶର ରାଜନୈତିକ ପତନ ଘଟିବ । ଏ ବିଷୟ ବିଜୟ ଓ ଖାରେନ୍‌ଙ୍କ ସହ ଆଲୋଚନା କରି ଓ ଦିଲ୍ଲୀରେ ଫିରୋଜ ଗାନ୍ଧୀ; ଅଶୋକ ମେହେଟାଙ୍କ ସହିତ ଆଲୋଚନା କରି ଆମ ଭିତରେ ସ୍ଥିର କଲୁଁ, ଜବାହରଲାଲଙ୍କୁ ଏଥିରେ ଏକମତ କରାଇବାକୁ ହେବ । ଏହାର ଦାୟିତ୍ୱ ନେଲେ ବିଜୟ ପଟ୍ଟନାୟକ । ଅଲଇଣ୍ଡିଆ କଂଗ୍ରେସ କମିଟିର ବିଚାର ପାଇଁ ଏକ ଥିସିସ୍ ମଧ୍ୟ ଦେଇଥିଲି । ଥିସିସ୍‌ର ବିଷୟବସ୍ତୁ ଥିଲା : "ସ୍ୱାଧୀନତା ସଂଗ୍ରାମରେ ଭାରତର ସବୁ ଅଞ୍ଚଳ ଏବଂ ସବୁ ଶ୍ରେଣୀର ଲୋକେ କଂଗ୍ରେସରେ ଯୋଗ ଦେଇଥିଲେ ଓ କଂଗ୍ରେସ ତଥାପି ସର୍ବବୃହତ୍ ଓ ବ୍ୟାପକ ରାଜନୈତିକ ଦଳ ଥିଲା । ସ୍ୱାଧୀନତା ପରେ କଂଗ୍ରେସ ସଂଗଠନ ପ୍ରତି ଦୃଷ୍ଟି ଦିଆହେଲା ନାହିଁ । ସଂଗ୍ରାମବେଳେ ଯାହା ଯେପରି ଥିଲା, ସେହିପରି ରହିଲା । କିନ୍ତୁ ସ୍ୱାଧୀନତା ପରେ ଗଣ ଭୋଟ ପ୍ରବର୍ତ୍ତିତ ହେବା ଫଳରେ



୧୬ ଫେବୃଆରୀ ୧୯୬୧   ଭୁବନେଶ୍ୱରରେ  ନିର୍ମିତ ଓଡ଼ିଶା ରାଜ୍ୟ ବିଧାନସଭା ସୌଧର ଉଦ୍‌ଘାଟନ ଉତ୍ସବରେ ଭାରତର ତତ୍‌କାଳୀନ ଉପରାଷ୍ଟ୍ରପତି ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କ ଉଦ୍‌ବୋଧନ, ପାଖରେ ଡକ୍ଟର ମହତାବ



ଭୁବନେଶ୍ୱରରେ ପ୍ରଥମ ଥର ପାଇଁ ଆୟୋଜିତ ପି. ଇ. ଏନ୍. ସମ୍ମିଳନୀରେ ଡକ୍ଟର ମହତାବଙ୍କ ଉଦ୍‌ବୋଧନ, ମଞ୍ଚରେ ଉପସ୍ଥିତ ଅଛନ୍ତି ପଣ୍ଡିତ ନେହେରୁ, ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍ ଓ ରାଜ୍ୟପାଳ ଶ୍ରୀ ସୁଖଠନ୍‌କର

ସବୁ ଅଞ୍ଚଳରେ ଏବଂ ସବୁ ଶ୍ରେଣୀରେ ରାଜନୈତିକ ଜାଗରଣ ଆରମ୍ଭ ହେଲା । ଏହା ଫଳରେ ସବୁ ଅଞ୍ଚଳରେ ସ୍ଥାନୀୟ ନେତୃତ୍ୱର ବିକାଶ ଘଟିଲା । ସବୁ ଶ୍ରେଣୀରେ ମଧ୍ୟ ରାଜନୈତିକ ନେତୃତ୍ୱର ବିକାଶ ଘଟିଲା । ଏ ସ୍ଥିତିକୁ କଂଗ୍ରେସ ଆୟତ୍ତ କରିବାକୁ ହେଲେ ନିଜର କାର୍ଯ୍ୟକ୍ରମ ସ୍ଥିର କରି ସ୍ଥାନୀୟ ନେତୃତ୍ୱ ଓ ଶ୍ରେଣୀଗତ ନେତୃତ୍ୱକୁ ସେଥିରେ ଏକମତ କରାଇ ଏହାକୁ କଂଗ୍ରେସର ନେତୃତ୍ୱ ଅଧୀନ ଆଣିବାକୁ ହେବ । କଂଗ୍ରେସ ନିଜସ୍ୱ ଶକ୍ତିରେ ସବୁ ଅଞ୍ଚଳ ଓ ସବୁ ଶ୍ରେଣୀକୁ ନିଜ ନେତୃତ୍ୱାଧୀନ କରିପାରିବ ନାହିଁ । ଏଣୁ କଂଗ୍ରେସ ନେତୃତ୍ୱରେ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିବା ହିଁ ସର୍ବୋତ୍ତମ ପନ୍ଥା । ବହୁ ଦେଶରେ ମିଳିତ ମନ୍ତ୍ରିମଣ୍ଡଳ ଜାତୀୟ ନେତୃତ୍ୱ ଅଧୀନରେ ଚାଲିଛି । ସ୍ୱିଡେନ୍‌ରେ ସୋସିଏଲିଷ୍ଟ ପାର୍ଟି ଅନ୍ୟ ଏକ ଦଳ ସହ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରି ସୁଶାସନ ପ୍ରତିଷ୍ଠା କରିଛି । ସେହିପରି ପଶ୍ଚିମ ଜର୍ମାନୀରେ । ଭାରତରେ କଂଗ୍ରେସକୁ ଦେଖିବାକୁ ହେବ—ଏହାର ଜାତୀୟ ନେତୃତ୍ୱ ଅକ୍ଷୁର୍ଣ୍ଣ ହେଉ । ଏଥିପାଇଁ ପ୍ରାଦେଶିକ ମିଳିତ ମନ୍ତ୍ରିମଣ୍ଡଳର ସାହାଯ୍ୟ ନେବାକୁ ହେବ ।" କଂଗ୍ରେସର କାର୍ଯ୍ୟକ୍ରମ ଥିଲା ସମାଜବାଦ ପ୍ରତିଷ୍ଠା ପାଇଁ ନାଗପୁର ଏ. ଆଇ. ସି. ସି. ଅଧିବେଶନରେ ଗୃହୀତ ପ୍ରସ୍ତାବ । ଏ କାର୍ଯ୍ୟକ୍ରମକୁ ଗଣତନ୍ତ୍ର ପରିଷଦ ଗ୍ରହଣ କଲେ । ଏହା ଥିଲା ଅଲ୍ ଇଣ୍ଡିଆ କଂଗ୍ରେସ କମିଟି ଗ୍ରହଣ କଲେ । ଜବାହରଲାଲ ପୂର୍ଣ୍ଣ ସମର୍ଥନ କଲେ । ଏହାପରେ ଓଡ଼ିଶାରେ କଂଗ୍ରେସ ଓ ଗଣତନ୍ତ୍ର ପରିଷଦର ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହେଲା ।

ତା ୨୨ । ୫ । ୧୯୫୯ରେ ମିଳିତ ମନ୍ତ୍ରିମଣ୍ଡଳ ଶପଥ ଗ୍ରହଣ କଲେ । ନିମ୍ନ ପ୍ରକାରରେ ମନ୍ତ୍ରିମଣ୍ଡଳ ଗଠିତ ହେଲା :

୧ । ହରେକୃଷ୍ଣ ମହତାବ (କଂଗ୍ରେସ)— ମୁଖ୍ୟମନ୍ତ୍ରୀ, ସାଧାରଣ ଶାସନ, ଶିକ୍ଷା, ଅର୍ଥ, ସ୍ୱାସ୍ଥ୍ୟ, ଆଦିବାସୀ, ଗ୍ରାମୋନ୍ନୟନ ଓ ଶ୍ରମ ।

୨ । ରାଜେନ୍ଦ୍ର ନାରାୟଣ ସିଂହଦେଓ (ଗଣତନ୍ତ୍ର ପରିଷଦ)— ଅର୍ଥ, ଶିଳ୍ପ, ମାଇନିଂ ଓ ଆଇନ ।

୩ । ରାଧାନାଥ ରଥ (କଂଗ୍ରେସ)—ଡେଭଲପ୍‌ମେଣ୍ଟ (ଶପଥ ନେଲେ ୧୪ । ୭ । ୫୯ରେ । )

୪ । ସତ୍ୟପ୍ରିୟ ମହାନ୍ତି (କଂଗ୍ରେସ)—ରେଭିନ୍ୟୁ, ଏକ୍‌ସାଇଜ ରାଜଧାନୀ ବିଭାଗ ।

୫ । ମାଳମଣି ରାଉତରାୟ (କଂଗ୍ରେସ)—ସପ୍ଲାଇ ଓ ବାଣିଜ୍ୟ ।

୬ । ଉଦିତ ପ୍ରତାପ ସିଂଦେଓ (ଗଣତନ୍ତ୍ର—ସାଧାରଣ ପ୍ରଶାସନ ।

୭ । ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ (କଂଗ୍ରେସ)—ଓ୍ୱାର୍କସ ।

୮ । ବୃନ୍ଦାବନ ନାୟକ (କଂଗ୍ରେସ)—ଟ୍ରାନ୍ସପୋର୍ଟ ଓ ଓ୍ୱାର୍କ୍ସ ।

୯ । ରାମପ୍ରସାଦ ମିଶ୍ର (ଗଣତନ୍ତ୍ର—ସ୍ୱାସ୍ଥ୍ୟ, ଶିଳ୍ପ ଓ ପୁନର୍ବସତି ।

୧୦ । ଲକ୍ଷ୍ମୀପ୍ରସାଦ ମିଶ୍ର (ଗଣତନ୍ତ୍ର ପରିଷଦ—ସାଧାରଣ ପ୍ରଶାସନ ।

୧୧ । ରାଜବଲ୍ଲଭ ମିଶ୍ର (ଗଣତନ୍ତ୍ର ପରିଷଦ)—ଆଦିବାସୀ, ଗ୍ରାମୋନ୍ନୟନ ଓ ଶ୍ରମ ।

ଏ ମନ୍ତ୍ରିମଣ୍ଡଳରୁ ବାଦ୍ ଯିବାରୁ ଦୀନବନ୍ଧୁ ସାହୁ, ଲିଙ୍ଗରାଜ ପାଣିଗ୍ରାହୀ ପ୍ରମୁଖ ଓ ଅନ୍ୟ କେତେକ କଂଗ୍ରେସ ଦଳ ଭିତରେ ଅସନ୍ତୁଷ୍ଟ ରହିଲେ । ରାଧାନାଥ ରଥ ମଧ୍ୟ କୌଣସି ପ୍ରଧାନ ବିଭାଗ ନ ପାଇବାରୁ ସେହି ଗୋଷ୍ଠୀରେ ଅନ୍ତର୍ଭୁକ୍ତ ଥିଲେ । କିନ୍ତୁ ଉଭୟ ଦଳ ବିଧାନସଭାରେ ସଂଖ୍ୟା ଗରିଷ୍ଠ ହେଲ । ଯେଉଁ ଅଳ୍ପ କେତେକ ଅସନ୍ତୁଷ୍ଟ ଗୋଷ୍ଠୀର ସଭ୍ୟ ରହିଲେ, ସେମାନେ ବିଶେଷ କିଛି ବାଧା ଜନ୍ମାଇ ପାରିଲେ ନାହିଁ । ଗଡଜାତ ମିଶ୍ରଣ ବେଳେ ରାଜାମାନଙ୍କୁ ଭତ୍ତା ଦେବା ସଙ୍ଗେ ସଙ୍ଗେ ସେମାନଙ୍କ ବନ୍ଧୁବାନ୍ଧବମାନଙ୍କୁ ଭତ୍ତା ଦେବାର ବ୍ୟବସ୍ଥା ମଧ୍ୟ ହୋଇଥିଲା । ରାଜାମାନଙ୍କ ଭତ୍ତା ବଜେଟ୍‌ର ଅନ୍ତର୍ଭୁକ୍ତ ନ ଥିଲା । କିନ୍ତୁ ବନ୍ଧୁବାନ୍ଧବମାନଙ୍କ ଭତ୍ତା ବଜେଟ୍ ଅନ୍ତର୍ଭୁକ୍ତ ଥିବା ହେତୁ ଏହା ବିଧାନସଭା ଭୋଟ ଉପରେ ନିର୍ଭର କରୁଥିଲା । କଂଗ୍ରେସ ମନ୍ତ୍ରିମଣ୍ଡଳ ସମୟରେ ଏମାନଙ୍କ ଭତ୍ତାକୁ ଉଚ୍ଛେଦ କରାଯାଇଥିଲା । ଏମାନେ କେନ୍ଦ୍ର ସରକାରଙ୍କଠାରେ ବରାବର ଆପତ୍ତି କରି ଆସୁଥିଲେ । ସ୍ୱରାଷ୍ଟ୍ର ବିଭାଗ ମନ୍ତ୍ରୀ ଗୋବିନ୍ଦ ବଲ୍ଲଭ ପନ୍ଥ ମଧ୍ୟ ମୋତେ ବାରମ୍ବାର ଲେଖୁଥିଲେ ଭତ୍ତା ଚାଲୁ ରଖିବା ପାଇଁ । ପରିବର୍ତ୍ତିତ ପରିସ୍ଥିତିରେ ମିଳିତ ମନ୍ତ୍ରିମଣ୍ଡଳ ଏହି ଭତ୍ତା-ଉଚ୍ଛେଦ ସିଦ୍ଧାନ୍ତକୁ ବାତିଲ୍ କରି ପୂର୍ବବତ୍ ଭତ୍ତା ଚାଲୁ କଲେ । ଏହା ହେଲା ମିଳିତ ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ଅସନ୍ତୁଷ୍ଟ ଗୋଷ୍ଠୀର ଅଭିଯୋଗ ।

ଯାହାହେଉ, ମିଳିତ ମନ୍ତ୍ରିମଣ୍ଡଳ ଗଠନ ପରେ ସଂଖ୍ୟାଲଘୁ ଶାସନଗତ ସମସ୍ତ ଉଦ୍‌ବେଗରୁ ମୁକ୍ତ ହେଲି । ଗଣତନ୍ତ୍ର ପରିଷଦର

ମନ୍ତ୍ରୀମାନେ ମୋତେ ଯଥୋଚିତ ସମ୍ମାନ ଦେଇ ପୂର୍ଣ୍ଣପ୍ରାଣରେ ଅନୁଗତ ହୋଇଥିଲେ । ଉଦ୍‌ବେଗମୁକ୍ତ ହେବା ପରେ ଗଠନ ଦିଗରେ ପୂରା ସମୟ ଦେଲି । ଉଦ୍‌ବେଗ ସମୟରେ ମଧ୍ୟ ଚିତ୍ତ ସ୍ଥିର ରଖି, ଯେତେଦୂର ସମ୍ଭବ, ଗଠନମୂଳକ କାର୍ଯ୍ୟ ସମାପନ କରୁଥିଲି ।

ରାଜନୈତିକ ସ୍ତରର ଅସୁବିଧା ଶାସନ ସ୍ତରରେ ଯେପରି କିଛି ବାଧା ସୃଷ୍ଟି ନ କରେ, ସେ ଦିଗରେ ସାବଧାନ ହୋଇ ରହୁଥାଏଁ । ଶାସନର ଘରସାମ୍ୟ ଯେପରି ଅକ୍ଷୁଣ୍ଣ ରହେ, ସେ ଦିଗରେ ଦୃଷ୍ଟି ରଖି ପ୍ରଦେଶକୁ ଉନ୍ନତି ପଥରେ, ଯେତେଦୂର ସମ୍ଭବ, ଆଗେଇନେବା ପାଇଁ ଚେଷ୍ଟା କଲି । ଶିକ୍ଷା ଦିଗରେ ଓଡ଼ିଶା ଅନ୍ୟ ପ୍ରଦେଶମାନଙ୍କଠୁଁ ପଛରେ । ଏଣୁ ଶିକ୍ଷାବିଭାଗକୁ ନିଜ ଦାୟିତ୍ୱରେ ରଖି ଉଦ୍ୟମ କଲି, ପ୍ରତ୍ୟେକ ଜିଲ୍ଲାରେ ଅନ୍ତତଃ ଗୋଟିଏ ପ୍ରଥମ ଶ୍ରେଣୀର କଲେଜ ସ୍ଥାପନ ହେଉ । ଏଥିପାଇଁ ସରକାରୀ ସାହାଯ୍ୟ ଯୋଗାଇବା ସମ୍ଭବ ନ ଥାଏ । ସବୁ ଜିଲ୍ଲାର ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ୍‌ମାନଙ୍କୁ ଉତ୍ସାହିତ କଲି, ସାଧାରଣଙ୍କଠାରୁ ଅର୍ଥ ସଂଗ୍ରହ କରି କଲେଜ ସ୍ଥାପନ କରିବାକୁ । ସେମାନଙ୍କୁ ଅର୍ଥସଂଗ୍ରହରେ ମୁଖ୍ୟମନ୍ତ୍ରୀ ହିସାବରେ ସାହାଯ୍ୟ କରିଥିଲି । ସେତେବେଳେ ସରକାରୀ ଅଫିସରମାନଙ୍କ ଆନୁଗତ୍ୟ ଫଳରେ କିପରି କାର୍ଯ୍ୟ ସାଧିତ ହୋଇପାରେ, ତାହାର କେତୋଟି ଉଦାହରଣ ଦେଉଛି । କେଉଁଝର ଜିଲ୍ଲା ମାଜିଷ୍ଟ୍ରେଟ ଶ୍ରୀ ଭେଙ୍କଟରମଣଙ୍କ ଉଦ୍ୟମରେ ସେଠାରେ କଲେଜ ସ୍ଥାପିତ ହେଲା । ସିରାଜୁଦ୍ଦିନଙ୍କୁ କଲେଜ ପାଇଁ ଘର ନିର୍ମାଣ କରାଇଥିଲୁ । ଏଥିପାଇଁ ଆବଶ୍ୟକ ଥିଲା, ତାଙ୍କୁ ଏ ବାବଦ ଖର୍ଚ୍ଚ ପାଇଁ ଇନ୍‌କମ୍ ଟେକ୍ସ ରିହାତି । ତାହା କରାଇଥିଲୁ । ସୁନ୍ଦରଗଡ଼ ଜିଲ୍ଲା ମାଜିଷ୍ଟ୍ରେଟ ପଞ୍ଚାୟତମାନଙ୍କରୁ ଅର୍ଥ ସଂଗ୍ରହ କରି ସେଠାରେ କଲେଜ ସ୍ଥାପନ କଲେ । ଶ୍ରୀ ଲଲିତେନ୍ଦୁ ପରିଜା ବାଲେଶ୍ୱରରେ ଥିଲେ ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ – ଗୁଡ଼ଲକଳ ବାଲାଙ୍କଠାରୁ ଅର୍ଥ ସଂଗ୍ରହ କରି ବାଲେଶ୍ୱରରେ ମହିଳା କଲେଜ ସ୍ଥାପନ କଲେ । ବରଗଡ଼ର ସବ୍‌ଡିଭିଜନାଲ ଅଫିସର ପଞ୍ଚାୟତମାନଙ୍କଠାରୁ ଅର୍ଥ ସଂଗ୍ରହ କରି ସେଠାରେ କଲେଜ ଖୋଲା କରାଇଲେ । ଅନୁଗୁଳରେ ନବବାବୁଙ୍କ ସମୟରେ ଗ୍ରାମାଞ୍ଚଳର ଶିକ୍ଷା ଯୋଜନାନୁସାରେ ଆରମ୍ଭ ହୋଇଥିବା ଅନୁଷ୍ଠାନକୁ କଲେଜରେ ପରିଣତ କରାହେଲା । ଢେଙ୍କାନାଳରେ ଏକ

ପ୍ରାଇଭେଟ କଲେଜ ମଧ୍ୟ ସ୍ଥାପିତ ହେଲା । ଫୁଲବାଣୀରେ ସରକାରୀ କଲେଜ ପ୍ରତିଷ୍ଠିତ ହେଲା । ବଲାଙ୍ଗୀରର ପୁରାତନ ମହାରାଜାଙ୍କ ଦ୍ୱାରା ସ୍ଥାପିତ କଲେଜକୁ ପ୍ରଥମ ଶ୍ରେଣୀର କଲେଜ କରାଗଲା । ଭବାନୀପାଟଣାରେ ଏକ ପ୍ରାଇଭେଟ କଲେଜ ଖୋଲାହେଲା । ଜୟପୁରରେ ସରକାରୀ କଲେଜ ସ୍ଥାପନ ହେଲା । ଅନୁନ୍ନତ ଅଞ୍ଚଳମାନଙ୍କରେ ସ୍ଥାପିତ ପ୍ରାଇଭେଟ କଲେଜମାନ ପରେ ସବୁ ଧୀରେ ଧୀରେ ସରକାରୀ କଲେଜ ହୋଇଯାଇଥିଲା । ସାଂସ୍କୃତିକ କାର୍ଯ୍ୟର ତିନୋଟି ଏକାଡେମୀ ପ୍ରତିଷ୍ଠିତ ହେଲା ସାହିତ୍ୟ ଏକାଡେମୀ, ସଙ୍ଗୀତ ନାଟକ ଏକାଡେମୀ ଓ ଲଳିତକଳା ଏକାଡେମୀ । ସାହିତ୍ୟ ଏକାଡେମୀ ପକ୍ଷରୁ ବିଭିନ୍ନ ଜିଲ୍ଲାରେ ସାହିତ୍ୟ ସଭାମାନ ଅନୁଷ୍ଠିତ ହେଲା । ସଙ୍ଗୀତ-ନାଟକ ଏକାଡେମୀ ପକ୍ଷରୁ ଭୁବନେଶ୍ୱରରେ ଏକ ସଙ୍ଗୀତ ସମାରୋହ ଅନୁଷ୍ଠିତ ହୋଇଥିଲା । ସର୍ବଭାରତୀୟ ସ୍ତରରେ ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କୁ ନେଇ ସଙ୍ଗୀତ ସମାରୋହ ହୋଇଥିଲା । ତାହା ତିନିଦିନ ଚାଲିଥିଲା । ପ୍ରତ୍ୟେକ ରାତିରେ ଶହ ଶହ ନରନାରୀଙ୍କ ସମାରୋହ ହେଉଥିଲା । ସେହିପରି ଓଡ଼ିଶୀ ସଙ୍ଗୀତ ପ୍ରସାର ପାଇଁ ମଧ୍ୟ ପ୍ରାଦେଶିକ ସମାରୋହ ହୋଇଥିଲା । ରାଜ୍ୟ ମିଉଜିୟମ ସ୍ଥାପିତ ହେବାଦିନୁ ପ୍ରତିଦିନ ବହୁ ସଂଖ୍ୟାରେ ଦର୍ଶକ ଆସିବାକୁ ଲାଗିଲେ । ଓଡ଼ିଶାର ଲୋକେ କଲିକତାର ଚିଡ଼ିଆଖାନା ଓ ଯାଦୁଘର (ମିଉଜିଅମ) ଦେଖିବାକୁ ଯାଆନ୍ତି । ସେମାନଙ୍କ ମନ ଅନୁସାରେ ମିଉଜିଅମ ଓ 'ନନ୍ଦନକାନନ' (ଚିଡ଼ିଆଖାନା) ପ୍ରତିଷ୍ଠିତ ହେଲା ।

ମୁଁ ମିଳିତ ମନ୍ତ୍ରିମଣ୍ଡଳର ମୁଖ୍ୟମନ୍ତ୍ରୀ ରୂପେ ୧୯୬୦ ପର୍ଯ୍ୟନ୍ତ ରହିଥିଲି । ସେତିକିବେଳେ କଂଗ୍ରେସର ମତି ପରିବର୍ତ୍ତିତ ହେଲା । କେରଳରେ ମିଳିତ ମନ୍ତ୍ରିମଣ୍ଡଳକୁ ଭାଙ୍ଗି ଦିଆଗଲା । ସେହିପରି ଓଡ଼ିଶାରେ ମଧ୍ୟ ମିଳିତ ମନ୍ତ୍ରିମଣ୍ଡଳରୁ କଂଗ୍ରେସ ଓହରି ଯିବାକୁ ନିଷ୍ପତ୍ତି କଲା ଓ ଫଳରେ ମୁଁ ମୁଖ୍ୟମନ୍ତ୍ରୀତ୍ୱରୁ ଇସ୍ତଫା ଦେଲି । ଏହାପରେ ଅଳ୍ପ କେତେ ମାସ ପାଇଁ ରାଷ୍ଟ୍ରପତି ଶାସନ ଜାରି ହେଲା ।

୧୯୫୭ରୁ ୧୯୬୦ ପର୍ଯ୍ୟନ୍ତ ନିମ୍ନଲିଖିତ କେତୋଟି ବିଷୟରେ ସଫଳତା ଲାଗି ମୁଁ ଆତ୍ମସନ୍ତୋଷ ଲାଭ କରିଥିଲି ।



୧୯୬୦ : ବନ୍ୟା ବିଧ୍ୱସ୍ତ ଅଞ୍ଚଳରେ ଦୁର୍ଗତ ଜନତାଙ୍କ ସହାନୁଭୂତି କାର୍ଯ୍ୟ




ଖଦୀ ଗ୍ରାମୋଦ୍ୟୋଗ ଭବନର ଶିଳାନ୍ୟାସ ଉତ୍ସବରେ ଛତ୍ରପୁରର ବିଧାୟକ ଶ୍ରୀ ସୀତାରାମାୟା, ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବ, ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ଶ୍ରୀ ନିତ୍ୟାନନ୍ଦ କାନୁନଗୋ

୧ । ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଶାସନ କାଳରେ ଅର୍ଥମନ୍ତ୍ରୀ ଶ୍ରୀ ରାଧାନାଥ ରଥଙ୍କ ପରାମର୍ଶ ଅନୁଯାୟୀ ରାଜଧାନୀ ନିର୍ମାଣ କାର୍ଯ୍ୟକୁ ବନ୍ଦ କରି ଦିଆଯାଇଥିଲା । ଏହାକୁ ପଞ୍ଚବାର୍ଷିକ ଯୋଜନାର ଅନ୍ତର୍ଭୁକ୍ତ କରାଯାଇ ନ ଥିଲା । ଫଳରେ ସବୁ କାର୍ଯ୍ୟ ବନ୍ଦ ହୋଇଯାଇଥିଲା । ମୁଁ ଏହାକୁ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାର ଅନ୍ତର୍ଭୁକ୍ତ କରାଇଲି ଏବଂ ପ୍ରାୟ ପାଞ୍ଚବର୍ଷ ପରେ ପୁଣି ରାଜଧାନୀ ନିର୍ମାଣ କାର୍ଯ୍ୟ ଶୁରୁହେଲା ।

୨ । ବମ୍ବେ ମିଉଜିୟମ ଢାଞ୍ଚାରେ ଓଡ଼ିଶା ମିଉଜିୟମ ପ୍ରତିଷ୍ଠା କରାଗଲା ।

୩ । ନନ୍ଦନକାନନ ବା ଚିଡ଼ିଆଖାନା ଓ ଉଦ୍ଭିଦ ଉଦ୍ୟାନ ପ୍ରତିଷ୍ଠିତ ହେଲା ।

୪ । ସମସ୍ତ ସରକାରୀ କାର୍ଯ୍ୟାଳୟ କଟକରୁ ଭୁବନେଶ୍ୱରକୁ ସ୍ଥାନାନ୍ତରିତ ହେଲା ।

୫ । ଭୁବନେଶ୍ୱରରେ ନୂତନ ରାଜଭବନ ନିର୍ମାଣ କରାଗଲା ।

୬ । ଆବଶ୍ୟକତା ଉପଯୋଗୀ ରାଜ୍ୟ ବିଧାନସଭା ସୌଧ ନିର୍ମିତ ହେଲା ।

୭ । ସେକ୍ରେଟେରିଏଟ ସୌଧର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହେଲା ।

୮ । ତିନୋଟି ଏକାଡେମୀ, ଯଥା – ସାହିତ୍ୟ ଏକାଡେମୀ, ସଙ୍ଗୀତ ନାଟକ ଏକାଡେମୀ ଓ ଲଳିତ କଳା ଏକାଡେମୀ ପ୍ରତିଷ୍ଠିତ ହେଲା ।

୯ । ସାଂସ୍କୃତିକ ଉତ୍ସବ ଓ ସଭାସମିତି କରାଯିବା ଉଦ୍ଦେଶ୍ୟରେ କଳାମଣ୍ଡପ ଓ ରବୀନ୍ଦ୍ରମଣ୍ଡପ ନିର୍ମିତ ହେଲା ।

୧୦ । ପୁରୁଣା ବିଧାନସଭା ହଲ୍‌କୁ ସର୍ଦ୍ଦାର ପଟେଲଙ୍କ ନାମରେ ନାମିତ କରାଗଲା ।

୧୧ । ଭୁବନେଶ୍ୱରଠାରେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ଥାୟୀ ସୌଧ ନିର୍ମାଣ ଲାଗି ସ୍ଥାନ ନିରୂପଣ ଓ ଭିତ୍ତି ପ୍ରତିଷ୍ଠା କରାଗଲା ।

ସେତେବେଳେ କଂଗ୍ରେସଦଳ ଯେଉଁ ପରିବର୍ତ୍ତନର ପ୍ରଣାଳୀ ଭିତରେ ଗତି କରିବାକୁ ଆରମ୍ଭ କରିଥିଲା, ସେ ବିଷୟରେ ଏଠାରେ ଉଲ୍ଲେଖ କରିବା ଉଚିତ ହେବ । ମୁଖ୍ୟମନ୍ତ୍ରୀଙ୍କଠାରୁ ମୁଁ ଇସ୍ତଫା ଦେବାର ଅଳ୍ପ କେତେ ସପ୍ତାହ ପୂର୍ବରୁ ନିର୍ବାଚନରେ କଂଗ୍ରେସ ଦଳର ପାର୍ଟି ବିନିଯୋଗ ସମ୍ପର୍କରେ ଶ୍ରୀ ଅଶୋକ ମେହେଟ୍ଟାଙ୍କ ସହିତ ମୋର ଦୀର୍ଘ ଆଲୋଚନା ହୋଇଥିଲା । ସେ ମୋତେ ବୁଝାଇବାକୁ ଚେଷ୍ଟା କରିଥିଲେ ଯେ କଂଗ୍ରେସ

ଦଳ ସମାଜବାଦୀ ମତ ଗ୍ରହଣ କରିଥିବାରୁ ଧନୀ ବ୍ୟକ୍ତିମାନଙ୍କଠାରୁ ଚାନ୍ଦା ଆଦାୟ କରିବା ଉଚିତ୍ ନୁହେଁ, କିନ୍ତୁ ଉନ୍ନୟନ ଯୋଜନା ବାବଦରେ ବ୍ୟୟ କରାଯାଉଥିବା ଅର୍ଥରୁ ଶତକଡ଼ା ହାରରେ ଏକ ନିର୍ଦ୍ଦିଷ୍ଟ ପରିମାଣ ଅର୍ଥକୁ କଂଗ୍ରେସ ସରକାର ନିର୍ବାଚନରେ ଦଳୀୟ ଖର୍ଚ୍ଚ ଲାଗି 'ଇଣ୍ଟର-ସେପ୍ଟ' କରି ରଖିନେବା ଉଚିତ୍ ହେବ । ସେ ବିଶେଷ କରି 'ଇଣ୍ଟର-ସେପ୍‌ସନ୍' ବା 'ବାଟମାରଣା' ଶବ୍ଦ ଉପରେ ଜୋର୍ ଦେଉଥିଲେ । ତାଙ୍କର ଏ ପ୍ରକାର ଯୁକ୍ତି ଶୁଣି ମୁଁ ସ୍ତମ୍ଭୀଭୂତ ହୋଇଗଲି । ତା'ପରେ ମୁଁ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ଶ୍ରୀ ଲାଲବାହାଦୂର ଶାସ୍ତ୍ରୀଙ୍କ ପାଖକୁ ଗଲି ଓ ଅଶୋକ ମେହେଟା ମତେ ଯେଉଁପରି ବୁଝାଇଥିଲେ, ତାହା ହିଁ ପ୍ରଧାନମନ୍ତ୍ରୀଙ୍କ ମତ କି ବୋଲି ତାଙ୍କୁ ପଚାରିଥିଲି । ସେ ହସି ହସି ମତେ କହିଲେ ଯେ ତାହା ହିଁ ହେଉଛି ତତ୍କାଳୀନ ସମୟର ନିୟମ । ତା'ପରେ ମୁଁ କୌଣସି ପ୍ରାଦେଶିକ ନିର୍ବାଚନରେ ଭାଗ ନେବିନାହିଁ କି କୌଣସି ପଦବୀ ଗ୍ରହଣ କରିବି ନାହିଁ ବୋଲି ସ୍ଥିର କଲି । ଏହି ନିଷ୍ପତ୍ତି ଦୃଷ୍ଟିରୁ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଜାରିହେବା ପରେ ୧୯୬୧ରେ ଅନୁଷ୍ଠିତ ମଧ୍ୟବର୍ତ୍ତୀକାଳୀନ ବିଧାନସଭା ନିର୍ବାଚନରେ ମୁଁ ପ୍ରତିଦ୍ୱନ୍ଦ୍ୱିତା କଲି ନାହିଁ । ପରେ ମୁଁ ୧୯୬୨ରେ ଲୋକସଭା ଆସନ ପାଇଁ ପ୍ରତିଦ୍ୱନ୍ଦ୍ୱିତା କଲି ଓ କେତେକ ପୂର୍ବତନ ଦେଶୀୟ-ରାଜ୍ୟ ସାମିଲ ହୋଇଥିବା ଏକ ଲୋକସଭା ଆସନରୁ ବିନା ପ୍ରତିଦ୍ୱନ୍ଦ୍ୱିତାରେ ନିର୍ବାଚିତ ହେଲି ।

୧୯୬୧ରେ ମଧ୍ୟବର୍ତ୍ତୀକାଳୀନ ବିଧାନସଭା ନିର୍ବାଚନରେ କଂଗ୍ରେସ ଦଳ ପ୍ରଭୂତ ପରିମାଣରେ ଅର୍ଥବ୍ୟୟ କଲା ଏବଂ ଶ୍ରୀ ବିଜୟ ପଟ୍ଟନାୟକଙ୍କ ନେତୃତ୍ୱରେ କଂଗ୍ରେସ ଦଳ ବିଧାନସଭାରେ ସଂଖ୍ୟାଗରିଷ୍ଠତା ହାସଲ କଲା । ୧୯୬୨ ଲୋକସଭା ନିର୍ବାଚନ ପରେ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ମତେ କଂଗ୍ରେସ ପାର୍ଲିଆମେଣ୍ଟାରୀ ଦଳର ଉପନେତା ରୂପେ ନିଯୁକ୍ତ କଲେ । ସେ ସମୟରେ ଲୋକସଭାରେ ଓ ରାଜ୍ୟସଭାରେ ମଧ୍ୟ, ବହୁ ସକ୍ରିୟ ଓ ପ୍ରବୀଣ କଂଗ୍ରେସ ଲୋକ ଥିଲେ । ସେମାନେ ପ୍ରାୟ ପ୍ରତି ସନ୍ଧ୍ୟାରେ ମୋର ସରକାରୀ ବାସଭବନକୁ ଆସୁଥିଲେ । ଆମେ ସବୁ ଆଲୋଚନା କରି ସ୍ଥିର କଲୁ ଯେ ଦଳ ହିସାବରେ କଂଗ୍ରେସ ଗୌଣ ଭୂମିକାରେ ନ ରହି ମୁଖ୍ୟ କାର୍ଯ୍ୟକାରକ ଭୂମିକା ଗ୍ରହଣ କରିବା ଉଚିତ ଏବଂ ଶାସନକୁ ନିୟନ୍ତ୍ରଣ କରିବାରେ କଂଗ୍ରେସ ଦଳର

ଏକ ସ୍ୱତନ୍ତ୍ର ସ୍ୱର ଓ ଭୂମିକା ରହିବା ଆବଶ୍ୟକ । ଏହା ଫଳରେ ଦଳର କାର୍ଯ୍ୟକାରୀ କମିଟି, ସରକାର ଭଳି କ୍ଷମତାଶାଳୀ ହୋଇଉଠିଲେ । ଏହାର ଚୂଡ଼ାନ୍ତ ରୂପ ପ୍ରକାଶ ପାଇଲା, ଯେତେବେଳେ କୃଷ୍ଣ ମେନନଙ୍କ କର୍ତ୍ତୃତ୍ୱାଧୀନ ପ୍ରତିରକ୍ଷା ମନ୍ତ୍ରଣାଳୟର ଭ୍ରମଭ୍ରାନ୍ତ ଓ ତ୍ରୁଟିପୂର୍ଣ୍ଣ ନୀତି ଯୋଗୁ ଚୀନ୍-ଭାରତ ଯୁଦ୍ଧରେ ଭାରତର ପରାଜୟ ଘଟିଲା । ଦଳର କାର୍ଯ୍ୟକାରୀ କମିଟି ଏ ଘଟଣାରେ ଅତି କଠୋର ଦୃଷ୍ଟିଭଙ୍ଗୀ ଗ୍ରହଣ କଲା । କୃଷ୍ଣ ମେନନ ଇସ୍ତଫା ଦେବା ଉଚିତ୍ ବୋଲି ଆମେ ଜିଦ୍‌ଧରି ବସିଲୁ । ଆମ୍ଭ-ମାନଙ୍କର ଏହି ଚାପ ଫଳରେ ପ୍ରଧାନମନ୍ତ୍ରୀ କୃଷ୍ଣ ମେନନଙ୍କୁ ମନ୍ତ୍ରୀମଣ୍ଡଳରୁ ବାଦ୍ ଦେବାକୁ ବାଧ୍ୟ ହେଲେ । ଏଠାରେ ପ୍ରସଙ୍ଗକ୍ରମେ କହିରଖେ, 'ପରବର୍ତ୍ତୀ କାଳରେ ଶ୍ରୀମତୀ ଇନ୍ଦିରାଗାନ୍ଧୀ ଜରୁରୀ ପରିସ୍ଥିତି ଜାରିକରିବା ସପକ୍ଷରେ ଏହି ଘଟଣା ଏକ ନଜିର ବୋଲି ଦର୍ଶାଇ କହୁଥିଲେ ଯେ, ଜବାହରଲାଲ ନେହେରୁଙ୍କ ଭଳି ଜଣେ ପ୍ରଧାନମନ୍ତ୍ରୀଙ୍କ ଉପରେ ତ ପୁଣି ଦଳୀୟ ଚାପ ପ୍ରୟୋଗ ଦ୍ୱାରା କାମ ଆଦାୟ କରି ନିଆଯାଇଥିଲା !

ଶ୍ରୀମତୀ ଗାନ୍ଧୀ ଆହ୍ଲାବାଦ ହାଇକୋର୍ଟରେ ନିର୍ବାଚନ ମକଦ୍ଦମାରେ ହାରିଯିବା ପରେ ଅସ୍ଥିର ଓ ଅସନ୍ତୁଷ୍ଟ ହୋଇ ଉଠୁଥିବା ଦଳକୁ ନିଜ ନିୟନ୍ତ୍ରଣରେ ରଖିବା ପାଇଁ ଯେ ଜରୁରୀକାଳୀନ ପରିସ୍ଥିତି ଜାରି କରିଥିଲେ, ଏଥିରେ ମୋର ତିଳେମାତ୍ର ସନ୍ଦେହ ନାହିଁ । ତା' ପରଠାରୁ ଦଳକୁ ପ୍ରଧାନମନ୍ତ୍ରୀଙ୍କ ହାତମୁଠାରେ ରଖିବା ଲାଗି ନେତୃତ୍ୱ ପକ୍ଷରୁ ସବୁ ପ୍ରକାର ଆବଶ୍ୟକୀୟ ପଦକ୍ଷେପ ନିଆଯାଉଥିବା ଲକ୍ଷ୍ୟ କରାଯାଉଛି ।

ଜବାହରଲାଲ ନେହେରୁଙ୍କ ମୃତ୍ୟୁପରେ 'ସିଣ୍ଡିକେଟ୍' ରୂପେ ପରିଚିତ ଏକ କ୍ଷୁଦ୍ର ଗୋଷ୍ଠୀଦ୍ୱାରା କଂଗ୍ରେସ ଦଳ ପରିଚାଳିତ ହେବାକୁ ଲାଗିଲା । ଶ୍ରୀ ଲାଲବାହାଦୂର ଶାସ୍ତ୍ରୀ ପ୍ରଧାନମନ୍ତ୍ରୀ ରୂପେ ଏ ପରିସ୍ଥିତିକୁ ସୁଧାରିବାକୁ ଚେଷ୍ଟା କରୁଥିଲେ, କିନ୍ତୁ ଦୁର୍ଭାଗ୍ୟକୁ ତାଙ୍କର ଦେହାନ୍ତ ହୋଇ-ଗଲା । ଏହି 'ସିଣ୍ଡିକେଟ୍'ର ସାହାଯ୍ୟରେ ଶ୍ରୀମତୀ ଇନ୍ଦିରାଗାନ୍ଧୀ ପ୍ରଧାନମନ୍ତ୍ରୀ ହେଲେ । ନିଜକୁ ଯେତେଦୂର ସମ୍ଭବ ଓ ଯେତେଦୂର ସତର୍କତା ଅବଲମ୍ବନ କରାଯାଇପାରେ, ସେହିଭଳି ସେ 'ସିଣ୍ଡିକେଟ୍' ଠାରୁ ନିଜକୁ ଦୂରେଇ ରଖିବାକୁ ଚେଷ୍ଟା କଲେ । ଏହା ଏପରି ଏକ ସମୟ ଥିଲା, ଯେତେବେଳେ ପ୍ରାୟ ପ୍ରତ୍ୟେକ ରାଜ୍ୟରେ କଂଗ୍ରେସ ଦଳ ଭିତରେ ପ୍ରଭୂତ ମାତ୍ରାରେ ଭିନ୍ନମତ ଓ ଅସନ୍ତୋଷ ପ୍ରକାଶ ପାଇଲା । ୧୯୬୭ର ନିର୍ବାଚନରେ ଓଡ଼ିଶା ସମେତ ଆଠଟି ରାଜ୍ୟରେ କଂଗ୍ରେସ ପରାଜିତ ହେଲା ଏବଂ ଏହି ଭିନ୍ନ ମତାବଲମ୍ବୀ ଗୋଷ୍ଠୀ ବିଭିନ୍ନ ରାଜ୍ୟରେ ଜନକଂଗ୍ରେସ, ବଙ୍ଗଳା

କଂଗ୍ରେସ ଓ ଭାରତୀୟ କ୍ରାନ୍ତିଦଳ ମିଳି ଉତ୍କଳ ନାମରେ କଂଗ୍ରେସଙ୍କୁ ଅଣ୍ଡିଲେ । ଏଥିର ସାଧାରଣ ନିର୍ବାଚନରେ ମୁଁ ଲୋକସଭାକୁ ପ୍ରତିଦ୍ୱନ୍ଦ୍ୱିତା କଲିନାହିଁ; କିନ୍ତୁ ଜନକଂଗ୍ରେସ ଦଳ ପକ୍ଷରୁ ରାଜ୍ୟ ବିଧାନସଭା ନିର୍ବାଚନରେ ପ୍ରତି-ଦ୍ୱନ୍ଦ୍ୱିତା କରି ବିଜୟଲାଭ କଲି; ମାତ୍ର କୌଣସି ପଦପଦବୀ ଗ୍ରହଣ କଲିନାହିଁ । ଓଡ଼ିଶାରେ ଜନକଂଗ୍ରେସ ଓ ସ୍ୱତନ୍ତ୍ର ଦଳର ମିଳିତ ମନ୍ତ୍ରିମଣ୍ଡଳ ୧୯୭୧ ଜାନୁଆରୀ ପର୍ଯ୍ୟନ୍ତ ଶାସନରେ ରହିଥିଲା । ୧୯୬୯ରେ ମୂଳ କଂଗ୍ରେସ୍ ଦଳର ବିଭାଜନ ଫଳରେ କଂଗ୍ରେସ ଦଳର ଚରିତ୍ର ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଗଲା ଏବଂ ଭାରତୀୟ ରାଜନୀତି ପୂର୍ବାପର ଏକ ନୂଆ ମୋଡ଼ ନେଲା ଓ କଂଗ୍ରେସର ପାରମ୍ପରିକ ସହିଷ୍ଣୁତା ବସ୍ତୁତଃ ଲୋପ ପାଇଗଲା । ୧୯୭୭ ପର୍ଯ୍ୟନ୍ତ କୌଣସି ପ୍ରକାରେ ମୁଁ ବିଧାନସଭାର ସଦସ୍ୟ ଭାବେ ରହିଥିଲି । କିନ୍ତୁ ଅଧ୍ୟୟନ, ସାମ୍ବାଦିକତା ଓ ସାହିତ୍ୟରେ ହିଁ ମୁଁ ପ୍ରାୟ ପୂରା ସମୟ ଦେବାକୁ ଲାଗିଲି । ଜରୁରୀ ପରିସ୍ଥିତି ବେଳର କେତେକ ଘଟଣା ପ୍ରତି ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କ ଦୃଷ୍ଟି ଆକର୍ଷଣ କରି ମୁଁ ଏକ ଫିଚର-ପ୍ରବନ୍ଧ ଲେଖିଥିଲି ଏବଂ ସେଥିପାଇଁ ମତେ ପ୍ରାୟ ୧୯ ମାସ କାଳ କାରାରୁଦ୍ଧ କରି ରଖାଯାଇଥିଲା । ଓଡ଼ିଶାରେ ସେତେବେଳେ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ । ଓଡ଼ିଶାରେ ସେ ସମୟର ଏମର୍ଜେନ୍ସି କାଳରେ ଏପରି ଏକ ତାଣ୍ଡବର ଅତ୍ୟାଚାର କରାଗଲା, ଯାହାକି ଅନ୍ୟ କୌଣସି ରାଜ୍ୟରେ ସେ ସମୟରେ ଘଟି ନ ଥିଲା । କେବଳ ଓଡ଼ିଶାରେ ହିଁ ପୂର୍ବତନ ରାଜ୍ୟପାଳ ଓ ପୂର୍ବତନ ମୁଖ୍ୟମନ୍ତ୍ରୀ-ମାନଙ୍କୁ ହିଁ ଗିରଫ କରାଯାଇ ସାଧାରଣ ବନ୍ଦୀଭାବେ ଜେଲ୍‌ମାନଙ୍କରେ ରଖାଯାଇଥିଲା । ସାଧାରଣ ବନ୍ଦୀ ଭଳି ବାରିପଦା ଜେଲ୍‌ରେ ଅଟକବନ୍ଦୀ ଭାବେ ରହିଥିବା ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ କାରାରୁଦ୍ଧ ଅବସ୍ଥାରେ ଆଂଶିକ ପକ୍ଷାଘାତ ରୋଗରେ ପୀଡ଼ିତ ହୋଇପଡ଼ିଲେ । ମତେ ମଧ୍ୟ ଫୁଲବାଣୀ ଜେଲ୍‌ରେ ସେହିଭଳି ସାଧାରଣ ବନ୍ଦୀର ବ୍ୟବହାର ପ୍ରଦର୍ଶନ କରାଯାଉଥିଲା । କିନ୍ତୁ ମୁଁ ଏହାର ପ୍ରତିବାଦ କଲି ଓ ଏହା ବିରୁଦ୍ଧରେ ଅନଶନ ଧର୍ମଘଟର ଆଶ୍ରୟ ନେଲି, ଯାହାଫଳରେ ଭଞ୍ଜନଗର ଜେଲ୍‌ରେ ମତେ ଉତ୍ତମ ବ୍ୟବହାର ପ୍ରଦର୍ଶନ କରାଯାଇଥିଲା ।

ଏହିପରି ମୋର ରାଜନୈତିକ ଜୀବନରେ ପୂର୍ଣ୍ଣଚ୍ଛେଦ ପଡ଼ିଲା ଓ ମୋର ଚିରପ୍ରିୟ ପ୍ରେମିକା ରୂପେ ପରିଚିତ ସାହିତ୍ୟିକ ଜୀବନକୁ ମୁଁ ଫେରିଆସିଲି ।